# ପ୍ରାକ୍ କଥନ

ଗତ ଦୁଇ ବର୍ଷ ଧରି 'ଆମ ଓଡ଼ିଶା' ତରଫରୁ 'ଶୁଦ୍ଧ ଓଡ଼ିଆ ଲିଖନ ପରୀକ୍ଷା'ର ଆୟୋଜନ ହୋଇ ଆସୁଛି । ଛାତ୍ରଛାତ୍ରୀ ଏବଂ ଅଭିଭାବକମାନେ ଏହା ପ୍ରତି ଯେଉଁ ସମର୍ଥନ ଦେଇଛଂତି, ତାହା ଆମକୁ ଅଭିଭୂତ କରିଛି । ପ୍ରଥମ ବର୍ଷର ପରୀକ୍ଷାରେ ଭାଗ ନେଇଥିବା ଛାତ୍ରଛାତ୍ରୀମାନେ ଇତିମଧ୍ୟରେ ମହାବିଦ୍ୟାଳୟରେ ଯୋଗ ଦେଲେଣି । ସେମାନଂକ ମଧ୍ୟରୁ ଅନେକେ ମହାବିଦ୍ୟାଳୟ ସ୍ତରରେ 'ଶୁଦ୍ଧ ଓଡ଼ିଆ ଲିଖନ ପରୀକ୍ଷା' ପରି ଏକ କାର୍ଯକ୍ରମ ମଧ୍ୟ ଦାବି କରୁଛଂତି । 'ଆମ ଓଡ଼ିଶା'ର ଉଦ୍‌ଘାଟନ ଦିନରୁ ଆମେ ଗୋଟିଏ ଆହ୍ୱାନ ଦେଇଥିଲୁ, "ଆସ ଆମେ ଶୁଦ୍ଧ ଓଡ଼ିଆ ଲେଖିବା, ଓଡ଼ିଶାକୁ ଚିହ୍ନି ଭଲ ପାଇବା ।" ଓଡ଼ିଶାକୁ ଭଲ ପାଇବାକୁ ହେଲେ ଓଡ଼ିଶାକୁ ଯେ ଭଲ ଭାବରେ ଚିହ୍ନିବାର ଆବଶ୍ୟକତା ରହିଛି ଏ କଥା ସମସ୍ତେ ସ୍ୱୀକାର କରିବେ । ତେବେ ଆମ ଛାତ୍ରଛାତ୍ରୀମାନେ ଅନ୍ୟ ଦେଶ ଓ ଦୁନିଆ ବିଷୟରେ ଯେତେ ଜାଣିଛଂତି, ଆମ ଓଡ଼ିଶା ସଂପର୍କରେ ସେତେ ଜାଣିନାହାଂତି । ଓଡ଼ିଶା ପ୍ରତି ପ୍ରୀତି ବଢ଼ାଇବା ପାଇଁ ଏବଂ ଓଡ଼ିଶା ସଂପର୍କରେ ଅଧିକରୁ ଅଧିକ ଜାଣିବାର ଆଗ୍ରହ ସୃଷ୍ଟି କରିବା ପାଇଁ 'ଆମ ଓଡ଼ିଶା' ତରଫରୁ ମହାବିଦ୍ୟାଳୟ ସ୍ତରର ଛାତ୍ରଛାତ୍ରୀଂକ ନିମଂତେ ଆସଂତା ଡିସେଂବର ୬ ତାରିଖ ଦିନ ପ୍ରଥମ ଥର ପାଇଁ ଏକ କୁଇଜ୍ ପ୍ରତିଯୋଗିତାର ଆୟୋଜନ କରାଯାଉଛି ।

କୁଇଜ୍ ପ୍ରତିଯୋଗିତାରେ ଭାଗ ନେବା ପାଇଁ ଏବଂ ପ୍ରତିଯୋଗିତା ସଂପର୍କରେ କିଛିଟା ଧାରଣା ଦେବା ପାଇଁ ଏହି ସୂଚନାଧର୍ମୀ ପୁସ୍ତିକା 'ଆମ ଓଡ଼ିଶା କୁଇଜ୍' ପ୍ରକାଶ କରାଯାଉଛି । ଏହି ପୁସ୍ତିକାର ମଧ୍ୟଭାଗରେ ପ୍ରତିଯୋଗିତାରେ ଭାଗ ନେବା ପାଇଁ ଆବେଦନପତ୍ରଟିଏ ସଂଲଗ୍ନ ହୋଇଛି । ଭାଗ ନେବାକୁ ଚାହୁଁଥିବା ଛାତ୍ରଛାତ୍ରୀମାନେ ପୁସ୍ତିକାଟି କିଣି ଆବେଦନପତ୍ର ମାଧ୍ୟମରେ ପ୍ରତିଯୋଗିତାରେ ଭାଗ ନେଇପାରିବେ । ଏଥିପାଇଁ ଅନ୍ୟ କୌଣସି ଶୁଳ୍କ ଦେବାକୁ ପଡ଼ିବନାହିଁ ।

ଶ୍ରୀ ସ୍ୱରାଜ ମିଶ୍ରଂକୁ ଦୂରଦର୍ଶନ ଓ ସଂବାଦପତ୍ର ମାଧ୍ୟମରେ 'କୁଇଜ୍ ମାଷ୍ଟର' ଭାବରେ ଆପଣମାନେ ଭଲ ଭାବରେ ଜାଣିଛଂତି । ସେ ଏହି ପୁସ୍ତିକାଟିକୁ ପ୍ରସ୍ତୁତ କରିବାରେ ବହୁ ଶ୍ରମ ଓ ସମୟ ଦେଇଛଂତି । ତାଂକୁ ଏ ଅବସରରେ ମୁଁ କୃତଜ୍ଞତା ଜଣାଉଛି ।

ମୋର ବିଶ୍ୱାସ, ପୁସ୍ତିକାଟି ଉଭୟ ଛାତ୍ରଛାତ୍ରୀ ଓ ସାଧାରଣ ପାଠକଂକ ପାଇଁ ଓଡ଼ିଶାକୁ ଚିହ୍ନି ଭଲ ପାଇବାରେ ସହାୟକ ହେବ ।

ସୌମ୍ୟରଂଜନ ପଟ୍ଟନାୟକ

# ଆରଂଭରୁ...

ଓଡ଼ିଶା ସଂପର୍କରେ ଜ୍ଞାତବ୍ୟ ତଥ୍ୟ ସବୁକୁ ପ୍ରଶ୍ନୋତ୍ତର ଛଳରେ ପରିବେଷଣ କରିବା ପାଇଁ ବର୍ତମାନ ସୁଦ୍ଧା ଅନେକ ଉଦ୍ୟମ ହୋଇଛି । ମାତ୍ର ଏଥିରେ କେବଳ ତଥ୍ୟ ସବୁକୁ ଗୋଟି ଗୋଟି କରି ବିଂଛିଦେବା ଛଡ଼ା ଅଧିକ କିଛି କରାଯାଇନାହିଁ । ବିଶେଷ କରି ଓଡ଼ିଶାର ବିଭିନ୍ନ ବିଭାବ ଉପରେ ଅଧିକରୁ ଅଧିକ ଜାଣିବା ପାଇଁ କୌତୂହଳ ସୃଷ୍ଟି କରିବାର ସେମିତି ଉଦ୍ୟମ ହୋଇନାହିଁ ।

'ଆମ ଓଡ଼ିଶା' ତରଫରୁ ରାଜ୍ୟବ୍ୟାପୀ "ଓଡ଼ିଶା କୁଇଜ୍" ପ୍ରତିଯୋଗିତା ଉପଲକ୍ଷେ ଏହି ଯେଉଁ ଅଭ୍ୟାସ ପୁସ୍ତିକାଟି ପ୍ରସ୍ତୁତ କରାଯାଇଛି, ପ୍ରକୃତପକ୍ଷେ ଏହା ଏକ ପୂର୍ଣାଂଗ ଓଡ଼ିଶା କୁଇଜ୍ ପୁସ୍ତକର ସଂକ୍ଷିପ୍ତ ରୂପ । ମୂଳତଃ ଲେଖକ ଦ୍ୱାରା ଦୂରଦର୍ଶନରେ ପରିବେଶିତ ହୋଇଥିବା କୁଇଜ୍ କାର୍ଯକ୍ରମ ଓ ପରେ ପରେ ରବିବାର 'ସମ୍ବାଦ' ପୃଷ୍ଠାରେ ପ୍ରକାଶିତ ହୋଇଥିବା ଓଡ଼ିଶା କୁଇଜ୍ ସ୍ତଂଭର ଛାପ ଏହି ପୁସ୍ତିକାରେ ରହିଛି । ସେଇଥି ପାଇଁ ପ୍ରଶ୍ନଗୁଡ଼ିକରେ ସ୍ଥାନେ ସ୍ଥାନେ ବିଶେଷ ଉପକ୍ରମଣିକା ଓ ବର୍ଣନା ମଧ୍ୟ ରହିଛି । ତେବେ ଖାଲି ସଠିକ୍ ଉତ୍ତରଟି ଚିହ୍ନିବା ଅପେକ୍ଷା ବିଷୟ ବା ଘଟନାଟି ଉପରେ ଅଧିକ ଜାଣିବା ପାଇଁ ଉତ୍କଂଠା ସୃଷ୍ଟି କରିବା ଏହାର ମୁଖ୍ୟ ଉଦ୍ଦେଶ୍ୟ ।

ଓଡ଼ିଶାର କଲେଜ ଛାତ୍ରଛାତ୍ରୀ ଏହି ପୁସ୍ତିକାର ସାହାଯ୍ୟ ନେଇ ପ୍ରତିଯୋଗିତା ପାଇଁ ପ୍ରସ୍ତୁତ ହେବେ ଏବଂ ଆବଶ୍ୟକ ସ୍ଥଳେ ଅନ୍ୟାନ୍ୟ ତଥ୍ୟ ସଂବଳିତ ପ୍ରାମାଣିକ ପୁସ୍ତିକାର ମଧ୍ୟ ସାହାଯ୍ୟ ନେବେ । ପ୍ରତିଯୋଗୀମାନଂକ ଛଡ଼ା ସେମାନଂକର ପିତାମାତା ଓ ପରିବାରବର୍ଗ ମଧ୍ୟ ପୁସ୍ତିକାଟି ମାଧ୍ୟମରେ କୁଇଜ୍‌ର ଆନଂଦ ନେଇପାରିବେ ।

ଆସଂତୁ, ଆମ ରାଜ୍ୟ ଓଡ଼ିଶାର ବିବିଧ ରୂପରାଗକୁ ଚିହ୍ନି ଏହାକୁ ଭଲ ପାଇବା ଏବଂ ପ୍ରତିବେଶୀମାନଂକ ଆଗରେ ଆମ ରାଜ୍ୟର ସ୍ୱାତଂତ୍ର୍ୟ ଓ ବିଶେଷତ୍ୱକୁ ପ୍ରତିଷ୍ଠା କରିବା ।

ସୁରାଜ ମିଶ୍ର

# ଇତିହାସ ଓ ସ୍ୱାଧୀନତା ସଂଗ୍ରାମ

*"ସ୍ୱରାଜ୍ୟ ଆମର ଜନ୍ମ ଅଧିକାର, କାମ୍ୟ ସ୍ୱାଧୀନତା ଧ୍ୟେୟ ଶ୍ରେଷ୍ଠସାର*
*ସେହି ଅଧିକାର ଲାଭ ହେତୁ ଭାଇ, ଚାଲ ଚାଲ ବାରେ ଆଗକୁ ଅନାଇ।"*

\- କୁନ୍ତଳା କୁମାରୀ ସାବତ

ଓଡ଼ିଶାର ଇତିହାସ ଅତି ପ୍ରାଚୀନ। କହିଁ କେତେ ଯୁଗରୁ ଓଡ଼ିଆ ଜାତି ତା'ର ସ୍ୱାତଂତ୍ର୍ୟ ଓ ସ୍ୱାଭିମାନ ବଂଚାଇ ରଖିବା ପାଇଁ ସଂଗ୍ରାମ କରିଚାଲିଛି। ଖ୍ରୀଷ୍ଟଜନ୍ମର ବହୁ ପୂର୍ବରୁ କଳିଂଗ ଯୁଦ୍ଧକାଳରେ ସମ୍ରାଟ୍ ଅଶୋକଙ୍କୁ ସାମନା କରିବାଠାରୁ ଆରଂଭ କରି ଓଡ଼ିଶାର ଶେଷ ହିଂଦୁ ରାଜା ମୁକୁଂଦଦେବଙ୍କ ପର୍ଯ୍ୟନ୍ତ ଏ ସଂଗ୍ରାମ ଅତୁଟ ରହିଛି। ଗଂଗାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଓଡ଼ିଶା ରାଜ୍ୟର ଗୌରବ କେତେବେଳେ ଆକାଶ ଚୁମିଛି ତ, କେତେବେଳେ ପଦାନତ ହୋଇଛି ବିଦେଶୀ ଶାସକଙ୍କର। କିନ୍ତୁ ସଂଗ୍ରାମ ଦୀପଶିଖା ଥମିଯାଇନାହିଁ। ବ୍ରିଟିଶ ସରକାର ଓଡ଼ିଶାକୁ କବଳିତ କରିଛନ୍ତି ସବାଶେଷରେ ଏବଂ ସ୍ୱାଧୀନତା ସଂଗ୍ରାମର ବହ୍ନିଶିଖା ଓଡ଼ିଶାରେ ଜଳିଉଠିଛି ଆରଂଭରୁ। ନିରବଚ୍ଛିନ୍ନ ସଂଗ୍ରାମର ଫଳସ୍ୱରୂପ ଭାରତବର୍ଷର ସ୍ୱାଧୀନତାର ବହୁ ପୂର୍ବରୁ ଭାଷା ଭିତ୍ତିରେ ଗଠିତ ହୋଇଛି ସ୍ୱତନ୍ତ୍ର ରାଜ୍ୟ ଓଡ଼ିଶା।

**ପ୍ରଶ୍ନ-୧ :** ନିମ୍ନରେ ଓଡ଼ିଶା ଇତିହାସର କିଛି ପ୍ରମୁଖ ଘଟନା ସହ ସେହି ଘଟନାଗୁଡ଼ିକର ସମୟକାଳ ଉଲ୍ଲେଖ କରାଯାଇଛି। ସେମାନଙ୍କୁ ମିଳାଇ ନିଅ।

| | | |
|---|---|---|
| (କ) | କଳିଂଗ ଯୁଦ୍ଧ | ଖ୍ରୀ. ୧୫୬୮ |
| (ଖ) | ହୁଏନ୍‌ସାଂଙ୍କ ଓଡ଼ିଶା ଆଗମନ | ଖ୍ରୀ. ୧୪୬୯-୭୦ |
| (ଗ) | ଖାରବେଳଙ୍କ ସିଂହାସନ ଆରୋହଣ | ଖ୍ରୀ. ୬୩୦ |
| (ଘ) | ପୁରୁଷୋତ୍ତମ ଦେବଙ୍କ କାଂଚି ବିଜୟ | ଖ୍ରୀ.ପୂ. ୨୬୧ |
| (ଙ) | ସୁଲେମାନ୍ କରାଣୀଙ୍କ ଦ୍ୱାରା ଓଡ଼ିଶାର ଶେଷ ସ୍ୱାଧୀନ ରାଜା ପରାସ୍ତ ଓ ଓଡ଼ିଶାର ସ୍ୱାଧୀନତା ଲୋପ | ଖ୍ରୀ.ପୂ. ୧୯୨ |

**ପ୍ରଶ୍ନ-୨ :** ନିମ୍ନଲିଖିତ ଐତିହାସିକ ଘଟନାଗୁଡ଼ିକୁ କାଳକ୍ରମରେ ସଜାଇ ଦିଅ।

(କ) ଶ୍ରୀ ଚୈତନ୍ୟଦେବଙ୍କ ଓଡ଼ିଶା ଆଗମନ
(ଖ) ଉତ୍କଳ ସମ୍ମିଳନୀର ପ୍ରତିଷ୍ଠା
(ଗ) ଶଂକରାଚାର୍ଯ୍ୟଙ୍କ ପୁରୀ ଆଗମନ
(ଘ) ଚୋଡ଼ଗଂଗଦେବଙ୍କ କଳିଂଗ ଅଧିକାର
(ଙ) ଟୋଡ଼ରମଲ୍ଲଙ୍କ ଦ୍ୱାରା ଓଡ଼ିଶା ବଂଦୋବସ୍ତ କାର୍ଯ୍ୟ ସଂପନ୍ନ

(ଚ) ରଘୁଜୀ ଭୋଁସଲାଂକ ବାରବାଟୀ ଦୁର୍ଗ ଅଧିକାର
(ଛ) ଇଂରେଜମାନଂକର ଓଡ଼ିଶା ଦଖଲ

**ପ୍ରଶ୍ନ-୩ :** ବିଂଶ ଶତାବ୍ଦୀର ପ୍ରାରଂଭରେ ରିସ୍‌ଲେ ସର୍କୁଲାର୍‌ର ସୁପାରିଶ ଓ ଭାଇସ୍‌ରାୟ ଲର୍ଡ଼ କର୍ଜନଂକର ଦୃଢ଼ ସମର୍ଥନ କ୍ରମେ ସଂବଲପୁର ଅଂଚଳକୁ ସେଂଟ୍ରାଲ୍ ପ୍ରୋଭିନ୍‌ସରୁ ଅଲଗା କରି ସେତେବେଳେ ବଂଗଳା ଅଧୀନରେ ଥିବା ଓଡ଼ିଶା ଡିଭିଜନ୍ ସହ ମିଶାଇ ଦିଆଯାଇଥିଲା । ତେବେ ସଂବଲପୁର ଠିକ୍ କେବେଠାରୁ ଓଡ଼ିଶା ସହ ମିଶିଲା ?

(କ) ୧୯୦୨ ଜାନୁଆରୀ ୧
(ଖ) ୧୯୦୩ ଡିସେଂବର ୩
(ଗ) ୧୯୦୫ ଅକ୍‌ଟୋବର ୧୬

**ପ୍ରଶ୍ନ-୪ :** ପୁରୀର ଗଜପତି ଦିବ୍ୟସିଂହ ଦେବଂକର ରାଜତ୍ୱର ନବମ ଅଂକରେ ଓଡ଼ିଶାରେ ଏକ ଭୟଂକର ଦୁର୍ଭିକ୍ଷ ପଡ଼ିଥିଲା, ଯେଉଁଥିରେ କି ପ୍ରାୟ ଦଶଲକ୍ଷରୁ ଅଧିକ ଲୋକ ପ୍ରାଣ ହରାଇଥିବାର ଜଣାଯାଏ । ଏହାର ପ୍ରଭାବରେ ଓଡ଼ିଶାର ଆର୍ଥନୀତିକ ଓ ସାମାଜିକ ଜୀବନ ସଂପୂର୍ଣ ଭାବରେ ବିପର୍ଯସ୍ତ ହୋଇପଡ଼ିଥିଲା । ଏହି ଦୁର୍ଭିକ୍ଷ କେଉଁ ମସିହାରେ ପଡ଼ିଥିଲା ?

(କ) ୧୮୦୩
(ଖ) ୧୮୧୭
(ଗ) ୧୮୬୬

**ପ୍ରଶ୍ନ-୫ :** ସ୍ୱାଧୀନତା ସଂଗ୍ରାମୀ ଯତୀଂଦ୍ର ନାଥ ମୁଖାର୍ଜୀ ମୟୂରଭଂଜ ଜିଲ୍ଲାର କପ୍ତିପଦା ଜଂଗଲ ଅଂଚଳରେ 'ବାଘାଯତୀନ' ନାମରେ ଖ୍ୟାତ ଥିଲେ । ଏହି ଜଂଗଲ ଭିତରେ ରହି ସେ ଓ ତାଂକର ସାଥୀମାନେ ସ୍ଥାନୀୟ ଲୋକଂକ ସହାୟତାରେ ଇଂରେଜମାନଂକ ବିରୋଧରେ ସଶସ୍ତ୍ର ସଂଗ୍ରାମ ଚଳାଇଥିଲେ । ଏହି ସଂଗ୍ରାମର ଅଂତିମ ପର୍ଯାୟରେ ବାଲେଶ୍ୱର ଜିଲ୍ଲାର ଏକ ନିର୍ଦିଷ୍ଟ ଗାଁ ନିକଟରେ ବ୍ରିଟିଶ ଫଉଜ ସହ ତାଂକର ଘମାଘୋଟ ଲଢ଼େଇ ହୋଇଥିଲା ଓ ପରେ ସେ ମୃତ୍ୟୁବରଣ କରିଥିଲେ । ଏହି ଗାଁଟି ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମର ଏକ ମହାନ୍ ସ୍ମୃତିପୀଠ । ଗାଁଟିର ନାଁ କ'ଣ ?

(କ) ଇରମ
(ଖ) ଇଂଚୁଡ଼ି
(ଗ) ଚଷାଖଂଡ

**ପ୍ରଶ୍ନ-୬ :** ମୃତ୍ୟୁ ପରେ ସଂବଲପୁରର ଅଗଣିତ ଜନତାଙ୍କ ସମ୍ମୁଖରେ ମହାନଦୀ କୂଳରେ ଚିତାଗ୍ନିରେ ସମର୍ପିତ ହେବା ପାଇଁ ସୁରେନ୍ଦ୍ର ସାଏଁଙ୍କର ଶେଷ ଇଚ୍ଛା ଥିଲେ ହେଁ ତାଙ୍କର ମୃତ୍ୟୁ ଓ ଅଂତିମ ସଂସ୍କାର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ହୋଇଥିଲା, ଯେଉଁଠାରେ ବଂଦି ହିସାବରେ ସେ ଶେଷ ଜୀବନ କଟାଇଥିଲେ । ସେ ସ୍ଥାନଟିର ନାଁ କ'ଣ ?

(କ) ଅସୁରଗଡ଼

(ଖ) ହଜାରିବାଗ

(ଗ) ବରପାଲି

**ପ୍ରଶ୍ନ-୭ :** 'ଆଜି ଓଡ଼ିଶା ପ୍ରଦେଶ ଏକ ଅପ୍ରାକୃତିକ ବିଧାନରେ ଗଠିତ ହୋଇଛି । ପିଲାଙ୍କୁ ଛେନାଗୁଡ଼ ଦେଇ ଖୁସି କରାଇ କାନ ଫୋଡ଼ାଇ ସିଂହୁର ମାରିଦେଲା ପରି ସରକାର ଓଡ଼ିଶା ଲୋକଙ୍କୁ ସ୍ୱତଂତ୍ର ପ୍ରଦେଶ ରୂପେ ଛେନାଗୁଡ଼ ଦେଇ ତାଙ୍କ ଶାସନ କୌଶଳ ରୂପକ ଛୁଂଚିରେ ଫୋଡ଼ି ତଥାକଥିତ ସ୍ୱତଂତ୍ର ସରକାରରୂପୀ ସିଂହୁର ମାରି ଉତ୍କଳର କାନଫୋଡ଼ା ଉତ୍ସବ କରାଇ ଦେଇଛଂତି ।'

କେବଳ ମାତ୍ର ସ୍ୱତଂତ୍ର ଓଡ଼ିଶା ପ୍ରଦେଶ ଗଠନରେ ଆତ୍ମବିଭୋର ନ ହୋଇ ସମସ୍ତ ଓଡ଼ିଆ ଭାଷାଭାଷୀ ଅଂଚଳକୁ ଏକତ୍ର କରିବା ପାଇଁ ନିବେଦନ କରି ତତ୍କାଳୀନ 'ସମାଜ' ସଂପାଦକ ୧୯୩୬ ମସିହା ଏପ୍ରିଲ ପହିଲା ଦିନ ତାଂକର ସଂପାଦକୀୟ ଅଗ୍ରଲେଖାରେ ଏ କଥା ଲେଖିଥିଲେ । ସେହି ସଂପାଦକଂକର ନାଁ କ'ଣ ?

(କ) ପଂଡିତ ଲିଂଗରାଜ ମିଶ୍ର

(ଖ) ପଂଡିତ ଗୋପବଂଧୁ ଦାସ

(ଗ) ଡକ୍ଟର୍ ରାଧାନାଥ ରଥ

**ପ୍ରଶ୍ନ-୮ :** ଗୁଜୁରାଟର ଦାଂଡୀ ଭଳି ଓଡ଼ିଶାରେ ଲବଣ ସତ୍ୟାଗ୍ରହର ପୀଠ ଥିଲା ବାଲେଶ୍ୱର ଉପକୂଳବର୍ତ୍ତୀ ଏକ ଛୋଟ ଗାଁ । ୧୯୩୦ ମସିହା ଏପ୍ରିଲ ମାସରେ ଆଚାର୍ଯ୍ୟ ହରିହରଙ୍କ ନେତୃତ୍ୱରେ ଓଡ଼ିଶାର ଲବଣ ସତ୍ୟାଗ୍ରହୀମାନେ ଏହି ଗାଁ ଅଭିମୁଖେ ପଦଯାତ୍ରା କରିଥିଲେ ଓ ସେଠାରେ ଲୁଣ ରାଂଧି ଲବଣ ଆଇନ ଭଂଗ କରିଥିଲେ । ଏହି ଗାଁଟିର ନାମ କ'ଣ ?

(କ) ଇଂଚୁଡ଼ି

(ଖ) ଇରମ

(ଗ) ରଂଭା

**ପ୍ରଶ୍ନ-୯ :** ଓଡ଼ିଶା ଇତିହାସରେ ପ୍ରଜାମଂଡଳ ଆଂଦୋଳନ କାଳରେ ପଲିଟିକାଲ୍ ଏଜେଂଟ୍ ବେଜେଲ୍‌ଗେଟ୍ ହତ୍ୟା ଘଟନା ଏକ ରୋମାଂଚକର ଅଧ୍ୟାୟ । ଓଡ଼ିଶାର ଏକ ନିର୍ଦ୍ଦିଷ୍ଟ ଗଡ଼ଜାତରେ ପ୍ରଜାମଂଡଳ ଆଂଦୋଳନ ଦମନ କରିବାକୁ ଆସିଥିବା ମେଜର୍

ବେଜେଲ୍‌ଗେଟ୍ ୧୯୩୯ ସାଲ ଜାନୁଆରି ୫ ତାରିଖ ଦିନ ଉତ୍ତ୍ୟକ୍ତ ଜନତାଙ୍କ ଆକ୍ରମଣରେ ମୃତ୍ୟୁବରଣ କରିଥିଲା ଏବଂ ଏହି ଘଟନାରେ ଅଭିଯୁକ୍ତ ହୋଇ ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ା ନାମରେ ଦୁଇଜଣ ସଂଗ୍ରାମୀ ଯୁବକ ଫାଶୀ ପାଇଥିଲେ । ତେବେ ବେଜେଲ୍‌ଗେଟ୍ ହତ୍ୟା ଘଟନା କେଉଁ ଗଡ଼ଜାତରେ ଘଟିଥିଲା ?

(କ) ରଣପୁର
(ଖ) ଢେଙ୍କାନାଳ
(ଗ) ନୟାଗଡ଼

ପ୍ରଶ୍ନ-୧୦ : ନିମ୍ନରେ ଓଡ଼ିଶାର ବିଭିନ୍ନ ଅଂଚଳରେ ତେଜି ଉଠିଥିବା କେତେଗୁଡ଼ିଏ ପ୍ରଜାମେଳି ଓ ବିଦ୍ରୋହର ନାମ ସହିତ କେତେଜଣ ସଂଗ୍ରାମୀ ନେତାଙ୍କ ନାମ ଦିଆଯାଇଛି । ସେମାନଙ୍କୁ ମିଳାଇଦିଅ ।

| | |
|---|---|
| (କ) ବାଣପୁର ମେଳି | (୧) ରାଜା ସୋମନାଥ ସିଂହ ଓ ମଣି ସାଂତରା |
| (ଖ) ଘୁମୁସର ବିଦ୍ରୋହ | (୨) ବକ୍‌ସି ଜଗବନ୍ଧୁ |
| (ଗ) ଅନୁଗୁଳ ବିଦ୍ରୋହ | (୩) ଦୋହରା ବିଶୋଇ ଓ ଚକ୍ର ବିଶୋଇ |
| (ଘ) କେଂଦୁଝର ପ୍ରଜାମେଳି | (୪) କୃତିବାସ ପାଟଶାଣୀ |
| (ଙ) ପାଇକ ବିଦ୍ରୋହ | (୫) ଧରଣୀଧର ଭୂୟାଁ |

ପ୍ରଶ୍ନ-୧୧ : 'କଟକ ଚିଂତା ବାଇମୁଂଡିକି' । କଟକ ସହରକୁ ଭଲ ପାଉଥିବା ପ୍ରତ୍ୟେକ ବ୍ୟକ୍ତି ନିକଟରେ 'ବାଇମୁଂଡି' ନାମର ଏକ ସ୍ୱତଂତ୍ର ସ୍ଥାନ ରହିଛି । ବାଇମୁଂଡି ରାଜାଙ୍କ ନିକଟରେ କଟକ ସହରର ସୁରକ୍ଷା ପାଇଁ ବାରଂବାର ଗୁହାରି କରିବା ଫଳରେ କାଠଯୋଡ଼ିରେ ପଥରବଂଧ ନିର୍ମିତ ହୋଇ କଟକ ସହରକୁ ବନ୍ୟାଦାଉରୁ ରକ୍ଷା କରାଯାଇପାରିଥିଲା । ଯେଉଁ ନୃପତି ଜଣକ ବାଇମୁଂଡିର ଅନୁରୋଧ ଏଡ଼ାଇ ନ ପାରି କାଠଯୋଡ଼ି ପଥରବଂଧ ନିର୍ମାଣ କରିଥିଲେ, ତାଂକର ନାଁ କ'ଣ ?

(କ) ନୃପ କେଶରୀ
(ଖ) ମର୍କତ କେଶରୀ
(ଗ) ଯଯାତି କେଶରୀ

ପ୍ରଶ୍ନ-୧୨ : ପ୍ରଜାମଂଡଳ ଆଂଦୋଳନ କାଳରେ ଯେଉଁ କେତେଜଣ ସହିଦ ହୋଇଥିଲେ, ସେମାନଂକ ମଧ୍ୟରୁ ୧୨ ବର୍ଷର ବାଳକ ବାଜି ରାଉତର ନାମ ଉଲ୍ଲେଖଯୋଗ୍ୟ । ବ୍ରାହ୍ମଣୀ ନଦୀରେ ନିଜ ଗାଁ ମୁଂଡ ଘାଟ ଜଗିଥିବା ସମୟରେ ସଶସ୍ତ୍ର ପୋଲିସ୍ ବାହିନୀକୁ ନଦୀ ପାର କରାଇ ନ ଦେଇ ବାଜି ରାଉତ ପୋଲିସ୍ ଗୁଳିରେ ପ୍ରାଣ ହରାଇଥିଲା । ବ୍ରାହ୍ମଣୀ ନଦୀର କେଉଁ ଘାଟରେ ଏହି ଦୁର୍ଘଟନା ଘଟିଥିଲା ?

(କ) କଳାମାଟିଆ
(ଖ) ନୀଳକଂଠପୁର
(ଗ) ଭୁବନ

**ପ୍ରଶ୍ନ-୧୩ :** ତାପଂଗଗଡ଼ର ଦଳବେହେରାଂକ ପ୍ରଜାପ୍ରୀତି ଓ ଦେଶପ୍ରେମ ସଂପର୍କରେ ମର୍ମସ୍ପର୍ଶୀ କିଂବଦଂତୀମାନ ରହିଛି । ୧୮୧୭ ମସିହାର ପାଇକ ବିଦ୍ରୋହ ପରେ ସେ ଅନ୍ୟ ଏକ ପାଇକ ବିଦ୍ରୋହର ନେତୃତ୍ୱ ନେଇଥିଲେ । ଜୀବିତ ବା ମୃତ ଅବସ୍ଥାରେ ତାଂକୁ ଧରାଇଦେଲେ ଅର୍ଥ ପୁରସ୍କାର ମିଳିବ ବୋଲି ବ୍ରିଟିଶ ସରକାର ଘୋଷଣା କରିଥିଲେ ଏବଂ ଥରେ ଛଦ୍ମ ବେଶରେ ଜଂଗଲରେ ବୁଲୁଥିବା ସମୟରେ ଜଣେ ଦରିଦ୍ର ଧୀବରକୁ ସାହାଯ୍ୟ କରିବାକୁ ଯାଇ ସେ ନିଜେ ଜାଣିଶୁଣି ବ୍ରିଟିଶ ଶାସକ ହାତରେ ଧରାଦେଇ ପୁରସ୍କାର ଅର୍ଥ ଧୀବରକୁ ଦେଇଦେବାକୁ ଅନୁରୋଧ କରିଥିଲେ । ତାଂକର ଏଭଳି ବୀରତ୍ୱରେ ମୁଗ୍ଧ ହୋଇ ବ୍ରିଟିଶ ସରକାର ତାଂକୁ ମୁକ୍ତ କରିଦେଇଥିଲେ । ତାପଂଗଗଡ଼ର ଏହି ଦଳବେହେରାଂକ ନାମ କ'ଣ ?

(କ) ମାଧବ ଚଂଦ୍ର ରାଉତରାୟ
(ଖ) ଗୋବର୍ଧନ ବୈରାଗଂଜନ
(ଗ) ବକ୍ସି ଜଗବଂଧୁ ବିଦ୍ୟାଧର

**ପ୍ରଶ୍ନ-୧୪ :** ଦେଶ ଜନତାଂକ ମଧ୍ୟରେ ଅସ୍ପୃଶ୍ୟତା ବର୍ଜନର ଆଦର୍ଶକୁ ଫଳପ୍ରଦ ଭାବରେ ପ୍ରଚାର କରିବା ପାଇଁ ମହାତ୍ମାଜୀ ପଦଯାତ୍ରା କରିବାର ନିଷ୍ପତ୍ତି ନେଇଥିଲେ ଏବଂ ଓଡ଼ିଶା ପାଇଁ ଏକ ଗୌରବର ବିଷୟ ଯେ, ଓଡ଼ିଶାର ଏକ ନିର୍ଦ୍ଦିଷ୍ଟ ସହରରୁ ଯାତ୍ରା ଆରଂଭ କରି, ସେ ଏହି ପଦଯାତ୍ରା ପଦ୍ଧତି ସର୍ବପ୍ରଥମେ ପ୍ରୟୋଗ କରିଥିଲେ ୧୯୩୪ ମେ ୯ ତାରିଖରେ । ଏହି ସହରଟିର ନାଁ କ'ଣ ?

(କ) କଟକ
(ଖ) ପୁରୀ
(ଗ) ଭଦ୍ରକ

**ପ୍ରଶ୍ନ-୧୫ :** ଉତ୍କଳ ସମ୍ମିଳନୀର ଭାରତୀୟ ଜାତୀୟ କଂଗ୍ରେସରେ ମିଶ୍ରଣ ବିଷୟ ନେଇ ମଧୁସୂଦନ ଓ ଗୋପବଂଧୁଂକ ମଧ୍ୟରେ ତୀବ୍ର ମତଭେଦ ସୃଷ୍ଟି ହୋଇଥିଲା । ଉତ୍କଳ ସମ୍ମିଳନୀର ଷୋଡ଼ଶ ଅଧିବେଶନ କାଳରେ ଏହି ମିଶ୍ରଣ ସପକ୍ଷରେ ଗୋପବଂଧୁ ଦାସଂକର ପ୍ରସ୍ତାବ ମଧୁସୂଦନଂକ ସମର୍ଥକମାନଂକର ଘୋର ବିରୋଧ ସତ୍ତ୍ୱେ ଗୃହୀତ ହୋଇଯାଇଥିଲା । ଉତ୍କଳ ସମ୍ମିଳନୀର ଏହି ଐତିହାସିକ ଷୋଡ଼ଶ ଅଧିବେଶନ କେଉଁଠାରେ ଅନୁଷ୍ଠିତ ହୋଇଥିଲା ?

(କ) ଚକ୍ରଧରପୁର
(ଖ) ପାରଳାଖେମୁଂଡି
(ଗ) ବ୍ରହ୍ମପୁର

## ଇତିହାସ ଓ ସ୍ୱାଧୀନତା ସଂଗ୍ରାମ

### ଉତ୍ତରମାଳା

୧. (କ) କଳିଂଗ ଯୁଦ୍ଧ - ଖ୍ରୀ.ପୂ. ୨୬୧
(ଖ) ହୁଏନ୍‌ସାଂଙ୍କ ଓଡ଼ିଶା ଆଗମନ - ଖ୍ରୀ. ୬୩୦
(ଗ) ଖାରବେଳଙ୍କ ସିଂହାସନ ଆରୋହଣ - ଖ୍ରୀ.ପୂ. ୧୯୨
(ଘ) ପୁରୁଷୋତ୍ତମ ଦେବଙ୍କ କାଂଚି ବିଜୟ - ଖ୍ରୀ ୧୪୬୯-୭୦
(ଙ) ଓଡ଼ିଶାର ସ୍ୱାଧୀନତା ଲୋପ - ଖ୍ରୀ. ୧୫୬୮

୨. (କ) ଶଂକରାଚାର୍ଯ୍ୟଙ୍କ ପୁରୀ ଆଗମନ - ଖ୍ରୀ. ୭୮୮-୮୨୨
(ଖ) ଚୋଡ଼ଗଂଗ ଦେବଙ୍କ କଳିଂଗ ଅଧିକାର - ୧୧ଶ ଶତାବ୍ଦୀ
(ଗ) ଶ୍ରୀ ଚୈତନ୍ୟ ଦେବଙ୍କ ଓଡ଼ିଶା ଆଗମନ - ଖ୍ରୀ ୧୫୧୦
(ଘ) ଟୋଡ଼ରମଲ୍ଲଙ୍କ ଦ୍ୱାରା ଓଡ଼ିଶା ବଂଦୋବସ୍ତ - ଖ୍ରୀ. ୧୫୯୪
(ଙ) ରଘୁଜୀ ଭୋଁସଲେଙ୍କ ବାରବାଟୀ ଦୁର୍ଗ ଅଧିକାର - ଖ୍ରୀ. ୧୭୪୫
(ଚ) ଇଂରେଜମାନଙ୍କ ଓଡ଼ିଶା ଦଖଲ - ଖ୍ରୀ. ୧୮୦୩
(ଛ) ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା - ଖ୍ରୀ. ୧୯୦୩

୩. (ଗ) ୧୯୦୫ ଅକ୍‌ଟୋବର ୧୬

୪. (ଗ) ୧୮୬୬

୫. (ଗ) ଚଷାଖଂଡ

୬. (କ) ଅସୁରଗଡ଼

୭. (କ) ପଂଡିତ ଲିଂଗରାଜ ମିଶ୍ର

୮. (କ) ଇଂଚୁଡ଼ି

୯. (କ) ରଣପୁର

୧୦. (କ) ବାଣପୁର ମେଳି - କୃତ୍ତିବାସ ପାଟଶାଣୀ
(ଖ) ଘୁସୁମର ବିଦ୍ରୋହ - ଦୋହରା ବିଶୋଇ ଓ ଚକ୍ର ବିଶୋଇ
(ଗ) ଅନୁଗୁଳ ବିଦ୍ରୋହ - ରାଜା ସୋମନାଥ ସିଂହ ଓ ମଣି ସାଂତରା
(ଘ) କେଂଦୁଝର ପ୍ରଜାମେଳି - ଧରଣୀଧର ଭୂୟାଁ
(ଙ) ପାଇକ ବିଦ୍ରୋହ - ବକ୍‌ସି ଜଗବଂଧୁ

୧୧. (ଖ) ମର୍କତକେଶରୀ

୧୨. (ଖ) ନୀଳକଂଠପୁର

୧୩. (କ) ମାଧବଚଂଦ୍ର ରାଉତରାୟ

୧୪. (ଖ) ପୁରୀ

୧୫. (କ) ଚକ୍ରଧରପୁର

# ନଦନଦୀ ଓ ବଣପାହାଡ଼

*"ଋଷିକୁଲ୍ୟ ଜଳେ ପସର ପଖାଳି, ମହେନ୍ଦ୍ର ଆସନେ ବସ*
*ଚିତ୍ରୋତ୍ପଳା ଜଳେ ସ୍ନାନ କରି ପାନ କର ସ୍ୱର୍ଣରେଖା ରସ।"*

- ଗଂଗାଧର ମେହେର

ଓଡ଼ିଶାର ପ୍ରାକୃତିକ ଶୋଭା ଓ ସଂପଦ ସାରା ଦେଶରେ ଅନନ୍ୟ। ପ୍ରକୃତି ଏ ରାଜ୍ୟରେ ତା'ର ରୂପର ପସରା ମେଲାଇଦେଇଛି। ପୂର୍ବ ଉପକୂଳର ଉର୍ବର ସମତଳଭୂମି ପଛକୁ ବେଢ଼ିରହିଛି ଘନ ଜଂଗଲ, ମାଳ ଅଂଚଳ ଓ ସୁଉଚ୍ଚ ପର୍ବତଶ୍ରେଣୀ। କେଉଁଠି ଖନିଜ ସଂପଦର ଗଂତାଘର ତ କେଉଁଠି ନଦୀ ଅବବାହିକାରେ ଏ ରାଜ୍ୟର ସଭ୍ୟତା ଓ ସଂସ୍କୃତି ବସା ବାଂଧିଛି।

**ପ୍ରଶ୍ନ-୧ :** ଭୂତାତ୍ତ୍ୱିକ ଦୃଷ୍ଟିକୋଣରୁ ଦେଖିଲେ ଓଡ଼ିଶା ଭୂଖଂଡର ବହୁ ବିଶେଷତ୍ୱ ରହିଛି। ପ୍ରାଚୀନ ଗଂଡଓ୍ୱାନାଲେଂଡ ଭୂପ୍ରଦେଶ ସହ ଓଡ଼ିଶାର ଭୂତାତ୍ତ୍ୱିକ ସାଦୃଶ୍ୟ ରହିଛି। ସବୁଠାରୁ କୌତୂହଳର କଥା ଯେ, ଓଡ଼ିଶାର ଏକ ନିର୍ଦ୍ଦିଷ୍ଟ ସ୍ଥାନରୁ ଆବିଷ୍କୃତ ହୋଇଥିବ ଏକ ଶିଳାଖଂଡ ବିଶ୍ୱର ଅନ୍ୟତମ ପ୍ରାଚୀନତମ ଶିଳା ରୂପେ ନିରୂପିତ ହୋଇଛି। ଏହାର ବୟସ ୩୭୭୫ ± ୮୯ ନିୟୁତ ବର୍ଷ ବୋଲି ଭୂଗବେଷକମାନେ ନିରୂପଣ କରିଛଂତି। ତେବେ ଏହି ଶିଳାଖଂଡ ଓଡ଼ିଶାର କେଉଁ ସ୍ଥାନରୁ ମିଳିଛି ?

(କ) ଚଂପୁଆ
(ଖ) ମାରାଗୁଡ଼ା ଉପତ୍ୟକା
(ଗ) ଯୋଗୀମଠ

**ପ୍ରଶ୍ନ-୨ :** କଳାହାଂଡି ଜିଲ୍ଲାର ଥୁଆମୂଳ ଗାଁ ନିକଟରୁ ବାହାରିଛି ଏକ ଛୋଟ ନଦୀ ଯାହାକି ଦକ୍ଷିଣ ଓଡ଼ିଶାରେ ଖୁବ୍ ବଂକାଟଂକା ରାସ୍ତାରେ କିଛିବାଟ ଗତି କଲା ପରେ ମଧ୍ୟପ୍ରଦେଶର ବସ୍ତର ଜିଲ୍ଲାରେ ପ୍ରବେଶ କରିଛି ଓ ପଡ଼ିଛି ଗୋଦାବରୀ ନଦୀରେ। ଏହି ନଦୀ ଉପରେ ଏକ ବୃହତ୍ ଜଳବିଦ୍ୟୁତ୍ ଯୋଜନା କାର୍ଯକାରୀ ହେଉଛି। ନଦୀଟିର ନାଁ କ'ଣ ?

(କ) ମାଛକୁଂଡ
(ଖ) ଇଂଦ୍ରାବତୀ
(ଗ) କୋଲାବ୍

ପ୍ରଶ୍ନ-୩ : ଓଡ଼ିଶାର ପ୍ରମୁଖ ଆଲୁମିନିୟମ୍ ପ୍ରକଳ୍ପ 'ନାଲ୍‌କୋ' କୋରାପୁଟ ଜିଲ୍ଲାର ଏକ ନିର୍ଦ୍ଦିଷ୍ଟ ଖଣିରୁ ବକ୍‌ସାଇଟ୍ ସଂଗ୍ରହ କରି ସେଥିରୁ ଆଲୁମିନିୟମ ଉତ୍ପାଦନ କରିଥାଏ। କୋରାପୁଟରେ ଦାମନଯୋଡ଼ି ନିକଟବର୍ତ୍ତୀ ଏହି ଖଣିଟିର ନାଁ କ'ଣ ?

(କ) ଦେଓମାଳି
(ଖ) ପଂଚପାଟମାଳି
(ଗ) ଗଂଧମାର୍ଦ୍ଦନ

ପ୍ରଶ୍ନ-୪ : ଖୋର୍ଦ୍ଧାଠାରୁ ମାତ୍ର ୪ କି.ମି. ଦୂରରେ ଥିବା ଏକ ପାହାଡ଼ ଆଜିର ଯୁବକମାନଙ୍କ ପାଇଁ ଏକ ବଣଭୋଜିର ପୀଠ। ମାତ୍ର ଏହି ପାହାଡ଼ଟି ଓଡ଼ିଶାର ବୀର ପାଇକମାନଙ୍କର ଗୌରବମୟ ଇତିହାସର ମୂକସାକ୍ଷୀ। ତାହାର ନାଁ କ'ଣ ?

(କ) ଧଉଳିଗିରି
(ଖ) ଖଂଡଗିରି
(ଗ) ବରୁଣେଇ

ପ୍ରଶ୍ନ-୫ : ମୁଁ ପଶ୍ଚିମ ଓଡ଼ିଶାର ଏକ ମୁଖ୍ୟ ନଦୀ। ନବରଂଗପୁର ଜିଲ୍ଲାରୁ ମୋର ଉତ୍ପତ୍ତି। କିଛି ବାଟ କଳାହାଂଡି ଜିଲ୍ଲାରେ ଗତି କଲା ପରେ ମୁଁ କଳାହାଂଡି ଓ ବଲାଂଗୀର ଜିଲ୍ଲାର ସୀମାରେଖା ରୂପେ ବେଶ୍ କିଛି ବାଟ ଯାଇଛି। ତା'ପରେ ବଲାଂଗୀର ଜିଲ୍ଲା ଭିତରେ ମାତ୍ର ୮ କି.ମି. ବହିଗଲା ପରେ ପୁଣି ଥରେ ସୋନପୁର ଓ ଫୁଲବାଣୀ ଜିଲ୍ଲାର ସୀମାରେଖା ଦେଇ ବହିଯାଇଛି ସୋନପୁର ପର୍ଯ୍ୟଂତ। ସେଇଠି ମୋର ଗତିପଥ ଶେଷ। ମୋର ନାଁ କ'ଣ ?

(କ) ତେଲ୍
(ଖ) ଇବ୍
(ଗ) ଅଂଗ୍

ପ୍ରଶ୍ନ-୬ : ଭାରତର ସର୍ବବୃହତ୍ ସୀସା ଖଣି ଓଡ଼ିଶାରେ ଅବସ୍ଥିତ। ହିନ୍ଦୁସ୍ଥାନ ଜିଂକ୍ ଲିମିଟେଡ୍ ଅଧୀନରେ ଥିବା ଏହି ଖଣିରେ ପ୍ରାୟ ୪୪.୬ ଲକ୍ଷ ଟନ୍ ସୀସା ଗଛିତ ଥିବାର କଳନା କରାଯାଇଛି। ଏହି ଖଣିଟି ଓଡ଼ିଶାର କେଉଁ ସ୍ଥାନରେ ଅବସ୍ଥିତ ?

(କ) ସରଗିପାଲି
(ଖ) ଗୋରୁମହିଷାଣି
(ଗ) ଢୋଡ଼ା

ପ୍ରଶ୍ନ-୭ : କଳାହାଂଡି ଜିଲ୍ଲାର ଏକ ନିର୍ଦ୍ଦିଷ୍ଟ ଅଂଚଳର ମୃତ୍ତିକା ଓ ଜଳବାୟୁକୁ ଓଡ଼ିଶାରେ କଫିଚାଷ ପାଇଁ ସର୍ବୋତ୍କୃଷ୍ଟ ବିବେଚନା କରାଯାଏ। ସମୁଦ୍ର ପତନଠାରୁ ପ୍ରାୟ ୨,୫୦୦ରୁ ୩,୦୦୦ ଫୁଟ ଉଚ୍ଚତାରେ ଥିବା ଏହି ଅଂଚଳରେ ବର୍ତ୍ତମାନ ବିସ୍ତୃତ ଭାବରେ କଫି ଚାଷ କରାଯାଉଛି। ଏହି ଅଂଚଳଟିର ନାଁ କ'ଣ ?

(କ) ଥୁଆମୂଳ ରାମପୁର
(ଖ) ଲାଂଜିଗଡ଼
(ଗ) ମଦନପୁର ରାମପୁର

ପ୍ରଶ୍ନ-୮ : ରାଉରକେଲାଠାରୁ ମାତ୍ର ୧୩ କି.ମି. ଦୂରବର୍ତ୍ତୀ ବେଦବ୍ୟାସ ଏକ ତୀର୍ଥସ୍ଥାନ ଏବଂ ପ୍ରାକୃତିକ ରୂପଶୋଭା ଲାଗି ପର୍ଯ୍ୟଟକମାନଙ୍କର ଆକର୍ଷଣର କେନ୍ଦ୍ର । ଏହିଠାରେ ଦୁଇଟି ଛୋଟ ନଦୀ ପରସ୍ପର ସହ ମିଳିତ ହୋଇ "ବ୍ରାହ୍ମଣୀ" ନଦୀ ସୃଷ୍ଟି ହୋଇଛି । ଏହି ନଦୀ ଦୁଇଟିର ନାମ କ'ଣ ?

(କ) ଶଂଖ ଓ କୋଏଲ୍
(ଖ) ଇବ୍ ଓ ତେଲ୍
(ଗ) ଦୟା ଓ ଭାର୍ଗବୀ

ପ୍ରଶ୍ନ-୯ : ବଉଦ ଜିଲ୍ଲାରୁ ନୟାଗଡ଼ ଜିଲ୍ଲାରେ ପ୍ରବେଶ କରିବା ବାଟରେ ପୂର୍ବଘାଟ ପର୍ବତମାଳାକୁ ଅତିକ୍ରମ କରିବା ପାଇଁ ଓଡ଼ିଶାର ଏକ ପ୍ରମୁଖ ନଦୀ ସଂକୀର୍ଣ୍ଣ ଗିରିପଥରେ ପ୍ରବେଶ କରିଛି ଏବଂ ସୃଷ୍ଟି ହୋଇଛି ସାତକୋଶବ୍ୟାପୀ ଏକ ଗଭୀର ଗଂଡ । ଏହାର ନାଁ ସାତକୋଶିଆ । ତେବେ ସେ ନଦୀଟିର ନାଁ କ'ଣ ?

(କ) ବୈତରଣୀ
(ଖ) ବ୍ରାହ୍ମଣୀ
(ଗ) ମହାନଦୀ

ପ୍ରଶ୍ନ-୧୦ : ନିମ୍ନରେ ଦିଆଯାଇଥିବା ଗୋଟିଏ ସ୍ତମ୍ଭରେ କେତେଗୁଡ଼ିଏ ପାହାଡ଼ର ନାଁ ଦିଆଯାଇଥିଲା ବେଳେ, ସମ୍ମୁଖସ୍ଥ ସ୍ତମ୍ଭରେ ସେହି ପାହାଡ଼ ସହ ସଂପୃକ୍ତ କିଛି ତଥ୍ୟ ଦିଆଯାଇଛି । ସେଗୁଡ଼ିକ ମିଳାଇଦିଅ ।

| | | | |
|---|---|---|---|
| (କ) | ଗୋନାସିକା | (୧) | ଚନ୍ଦ୍ରଶେଖର ମନ୍ଦିର |
| (ଖ) | ଧଉଳିଗିରି | (୨) | ଓଡ଼ିଶାର ସର୍ବୋଚ୍ଚ ପର୍ବତଶୃଙ୍ଗ |
| (ଗ) | କପିଳାସ | (୩) | ନୃସିଂହନାଥ ମନ୍ଦିର |
| (ଘ) | ଗନ୍ଧମାର୍ଦନ | (୪) | ବୈତରଣୀ ନଦୀର ଉତ୍ପତ୍ତିସ୍ଥଳ |
| (ଙ) | ଦେଓମାଳି | (୫) | ଅଶୋକଙ୍କ ଶିଳାଲେଖ |

ପ୍ରଶ୍ନ-୧୧ : ପ୍ରତିବର୍ଷ ଚୈତ୍ର ମାସ କୃଷ୍ଣ ତ୍ରୟୋଦଶୀ ତିଥିରେ ଓଡ଼ିଶାର ଅନ୍ୟତମ ପବିତ୍ର ତୀର୍ଥକ୍ଷେତ୍ର ଯାଜପୁରର ଇତିହାସ ପ୍ରସିଦ୍ଧ ଦଶାଶ୍ୱମେଧ ଘାଟରେ ଏକ ପବିତ୍ର ସ୍ନାନଯୋଗ ପଡ଼ିଥାଏ । ଏହି ପବିତ୍ର ମୁହୂର୍ତ୍ତରେ ବୈତରଣୀରେ ସ୍ନାନ କରି ପୁଣ୍ୟ ଅର୍ଜନ କରିବା ଉଦ୍ଦେଶ୍ୟରେ ବହୁ ଦୂରଦୂରାଂତରୁ ଧର୍ମପ୍ରିୟ ବ୍ୟକ୍ତିମାନେ ଏହି ଦିନ ଯାଜପୁରରେ ଏକତ୍ର ହୋଇଥାଂତି । ତେବେ ଏହି ସ୍ନାନଯୋଗର ନାଁ କ'ଣ ?

(କ) ଚୈତ୍ରୀ ସ୍ନାନ
(ଖ) ତ୍ରିବେଣୀ ସ୍ନାନ
(ଗ) ବାରୁଣୀ ସ୍ନାନ

**ପ୍ରଶ୍ନ-୧୨ :** ଓଡ଼ିଶାର ଦୁଇଟି ପ୍ରମୁଖ ନଦୀ ସମୁଦ୍ରରେ ପଡ଼ିବା ପୂର୍ବରୁ ଗୋଟିଏ ସ୍ଥାନରେ ପରସ୍ପର ସହିତ ମିଶି ଏକାଠି ସମୁଦ୍ରରେ ପଡ଼ିଛଂତି। ଦୁଇଟି ନଦୀର ଏହି ସଂଗମସ୍ଥଳୀଟିର ନାଁ ଧାମରା। ତେବେ ନଦୀ ଦୁଇଟିର ନାଁ କ'ଣ ?

(କ) ବ୍ରାହ୍ମଣୀ ଓ ସୁବର୍ଣ୍ଣରେଖା
(ଖ) ବୁଢ଼ାବଳଂଗ ଓ ବୈତରଣୀ
(ଗ) ବ୍ରାହ୍ମଣୀ ଓ ବୈତରଣୀ

**ପ୍ରଶ୍ନ-୧୩ :** ନିମ୍ନଲିଖିତ ଦୁଇଟି ସ୍ତଂଭରେ କେତେଗୁଡ଼ିଏ ସହରର ନାଁ ସହିତ ତା'ର ନିକଟରେ ବହି ଯାଇଥିବା କେତେଗୁଡ଼ିଏ ନଦୀର ନାଁ ଦିଆଯାଇଛି। ସେଗୁଡ଼ିକ ମିଳାଇ ନିଅ।

| | | | |
|---|---|---|---|
| (କ) | କେସିଂଗା | (୧) | ସାଲଂଦୀ |
| (ଖ) | ପୁରୁଷୋତ୍ତମପୁର | (୨) | ବ୍ରାହ୍ମଣୀ |
| (ଗ) | ତାଳଚେର | (୩) | ସୁବର୍ଣ୍ଣରେଖା |
| (ଘ) | ବାରିପଦା | (୪) | ମହାନଦୀ |
| (ଙ) | ଚଂପୁଆ | (୫) | ଋଷିକୁଲ୍ୟା |
| (ଚ) | ରାୟଗଡ଼ା | (୬) | ତେଲ୍ |
| (ଛ) | ବଡ଼ଂବା | (୭) | ବଂଶଧାରା |
| (ଜ) | ଜଳେଶ୍ୱର | (୮) | ବୁଢ଼ାବଳଂଗ |
| (ଝ) | ଗୁଣପୁର | (୯) | ବୈତରଣୀ |
| (ଞ) | ଭଦ୍ରକ | (୧୦) | ନାଗାବଳୀ |

**ପ୍ରଶ୍ନ-୧୪ :** ଚିଲିକା ହ୍ରଦ ଭିତରେ ଥିବା ଦୁଇଟି ପ୍ରମୁଖ ଦ୍ୱୀପର ନାଁ କ'ଣ ?

(କ) ଚଢ଼େଇହଗା ଓ ମାମୁ ଭଣଜା
(ଖ) ଧବଳେଶ୍ୱର ଓ କାଳିଜାଈ
(ଗ) ପାରିକୁଦ ଓ ମାଲୁଦ

**ପ୍ରଶ୍ନ-୧୫ :** ଆଠମଲ୍ଲିକଠାରୁ ଅଳ୍ପ ଦୂରରେ ଏକ ଉଷ୍ଣପ୍ରସ୍ରବଣ ଅଛି। ଏଠାରେ ଥିବା ଉତ୍ତପ୍ତ ପାଣିକୁଂଡମାନଂକରୁ ଜଳ ନେଇ ସ୍ନାନ କଲେ, ବହୁ ଦୁରାରୋଗ୍ୟ ବ୍ୟାଧି ଦୂର ହୋଇପାରିବ ବୋଲି ଲୋକଂକର ବିଶ୍ୱାସ। ସ୍ଥାନଟିର ନାଁ କ'ଣ ?

(କ) ଦେଉଳଝରି
(ଖ) ତପ୍ତପାଣି
(ଗ) ଅତ୍ରି

## ନଦନଦୀ ଓ ବଣପାହାଡ଼

### ଉତ୍ତରମାଳା

| | | |
|---|---|---|
| ୧. (କ) ଚଂପୁଆ, | ୨. (ଖ) ଇଂଦ୍ରାବତୀ | ୩. (ଖ) ଫଂଫେଫେମାଳି, |
| ୪. (ଗ) ବଗୁଣେଇ, | ୫. (କ) ତେଲ୍ | ୬. (କ) ସରଗିପାଲି, |
| ୭. (କ) ଥୁଆମୂଳ ରାମପୁର, | ୮. (କ) ଶଂଖ ଓ କୋଏଲ୍, | ୯. (ଗ) ମହାନଦୀ |

୧୦. (କ) ଗୋନାସିକା : ବୈତରଣୀ ନଦୀର ଉତ୍ପତ୍ତିସ୍ଥଳ
(ଖ) ଧଉଳିଗିରି : ଅଶୋକଂକ ଶିଳାଲେଖ
(ଗ) କପିଳାସ : ଚଂଦ୍ରଶେଖର ମଂଦିର
(ଘ) ଗଂଧମାର୍ଦ୍ଦନ : ନୃସିଂହନାଥ ମଂଦିର
(ଙ) ଦେଓମାଳି : ଓଡ଼ିଶାର ସର୍ବୋଚ୍ଚ ପର୍ବତ ଶୃଂଗ

୧୧. (ଗ) ବାରୁଣୀ ସ୍ନାନ

୧୨. (ଗ) ବ୍ରାହ୍ମଣୀ ଓ ବୈତରଣୀ

| | | |
|---|---|---|
| ୧୩. (କ) | କେସିଂଗା | ତେଲ୍ |
| (ଖ) | ପୁରୁଷୋତ୍ତମପୁର | ଋଷିକୂଲ୍ୟା |
| (ଗ) | ତାଳଚେର | ବ୍ରାହ୍ମଣୀ |
| (ଘ) | ବାରିପଦା | ବୁଢ଼ାବଳଂଗ |
| (ଙ) | ଚଂପୁଆ | ବୈତରଣୀ |
| (ଚ) | ରାୟଗଡ଼ା | ନାଗାବଳୀ |
| (ଛ) | ବଡ଼ଂବା | ମହାନଦୀ |
| (ଜ) | ଜଳେଶ୍ୱର | ସୁବର୍ଣ୍ଣରେଖା |
| (ଝ) | ଗୁଣପୁର | ବଂଶଧାରା |
| (ଞ) | ଭଦ୍ରକ | ସାଳଂଦୀ |

୧୪. (କ) ପାରିକୁଦ ଓ ମାଳୁଦ

୧୫. (କ) ଦେଉଳଝରି

# ଆଦିବାସୀ ଓ ଜନଜୀବନ

*"ଗାଙ୍ଗମି କରମା ଗାଟ ମାଲ୍ ନାଇଁ ଅଃସେ*
*କୁହାର୍ କୁହାର୍ କରମସାନି ଟୋଟେ ହୋ*
*ଫରପନ୍ ହୁଅ ମୋଟେ"*
- କରମା ପୂଜା ଗୀତ

ଐତିହାସିକ ଓ ନୃତତ୍ତ୍ୱବିଦ୍‌ମାନଙ୍କ ଗବେଷଣାରୁ ଜଣାଯାଏ ଯେ, ଓଡ଼ିଶାର ପ୍ରାଚୀନ ଧର୍ମ ଓ ସଂସ୍କୃତିକୁ ଏ ଦେଶର ପ୍ରାଚୀନତମ ଅଧିବାସୀ ଶବରମାନେ ବିଶେଷ ଭାବରେ ପ୍ରଭାବିତ କରିଥିଲେ । ସେମାନଙ୍କ ପରେ ଦ୍ରାବିଡ଼ ଏବଂ ଅବଶେଷରେ ଆର୍ଯ୍ୟମାନେ ଆସି ସେମାନଙ୍କୁ ଜଂଗଲକୁ ତଡ଼ିଦେଇ ନିଜେ ଉର୍ବର ସମତଳ କ୍ଷେତ୍ରମାନ ଅଧିକାର କରି ସଭ୍ୟତା ବିସ୍ତାର କଲେ । ତେବେ ଓଡ଼ିଶାର ଦେବତା ଶ୍ରୀଜଗନ୍ନାଥ ଏବେ ବି ଶବର ଦେବତା । ତା'ଛଡ଼ା ଏ ରାଜ୍ୟର ଲୋକାଚାର, ଲୋକସଂସ୍କାର, ଲୋକନାଟ୍ୟ, ଲୋକସଂଗୀତ ଏବଂ ଏପରି କି ସମୁଦାୟ ଜୀବନଧାରା ଏହି ଆଦିବାସୀ ଜନଜୀବନର ପ୍ରାକୃତିକ ସ୍ଫୂର୍ତ୍ତି ଓ ଜୀବନୋଲ୍ଲାସର ସ୍ୱାକ୍ଷର ବହନ କରେ ।

**ପ୍ରଶ୍ନ-୧ :** ଓଡ଼ିଶା ରାଜ୍ୟର ଅବସ୍ଥିତି ସଂପର୍କରେ ମିଳୁଥିବା ପ୍ରାଚୀନ ପ୍ରମାଣମାନଙ୍କ ମଧ୍ୟରୁ ଗ୍ରୀକ୍ ଲେଖକ ପ୍ଲିନିଙ୍କର ରଚନା ଅନ୍ୟତମ । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ରଚିତ ତାଙ୍କର ପୁସ୍ତକରେ ସେ 'ଓରେଟସ୍'ମାନଙ୍କ ରାଜ୍ୟ ବିଷୟରେ ଉଲ୍ଲେଖ କରିଛନ୍ତି । ଗ୍ରୀକ୍ ଶବ୍ଦ 'ଓରେଟସ୍' ସଂସ୍କୃତ 'ଓଡ୍ର' ସହ ସମାନ ବୋଲି ଗବେଷକମାନଙ୍କର ମତ । ପ୍ଲିନିଙ୍କ ମତରେ ଓରେଟସ୍‌ମାନଙ୍କ ରାଜ୍ୟରେ 'ମେଲିଅସ୍' ନାମରେ ଏକ ପର୍ବତ ଥିଲା ଏବଂ ସେଥିରେ 'ସଉରି' ଓ 'ମୋନେଡ୍' ନାମକ ଜାତି ବାସ କରୁଥିଲେ । ଗବେଷକମାନେ ନିରୂପଣ କରିଛନ୍ତି ଯେ, ଏହି 'ମେଲିଅସ୍' ପାହାଡ଼ଟି ବର୍ତ୍ତମାନର 'ମଳୟଗିରି' ପାହାଡ଼ ଏବଂ ସଉରି ଓ ମୋନେଡ୍‌ମାନେ ହେଉଛନ୍ତି ଏହି ଅଂଚଳରେ ବାସ କରୁଥିବା ଶବର ଓ ମୁଂଡା ସଂପ୍ରଦାୟର ଆଦିବାସୀ । ତେବେ ଏହି ମଳୟଗିରି ପାହାଡ଼ଟି ଓଡ଼ିଶାର କେଉଁ ଜିଲ୍ଲାରେ ଅବସ୍ଥିତ ?

(କ) ଅନୁଗୁଳ
(ଖ) ଗଜପତି
(ଗ) କୋରାପୁଟ

ପ୍ରଶ୍ନ-୨ : ଦକ୍ଷିଣ-ପଶ୍ଚିମ ଓଡ଼ିଶାର ଏକ ନିର୍ଦ୍ଦିଷ୍ଟ ଅଂଚଳରେ ତିଆରି ହେଉଥିବା 'ଲାଖ'ର ହସ୍ତଶିଳ୍ପ ଦେଶବିଦେଶରେ ବହୁଳ ଭାବରେ ଆଦୃତ ହୋଇଛି । ଏହି ଅଂଚଳରେ କୁଶଳୀ କାରିଗରମାନେ ଜଂଗଲର ଗଛଗୁଡ଼ିକରୁ ଲାଖ ସଂଗ୍ରହ କରି ତାହାକୁ ତରଳାଇ ଓ ସେଥିରେ ରଂଗ ମିଶାଇ ସୁଂଦର ସୁଂଦର କୁଂଢେଇ, ବାକ୍ସ, ଚୁଡ଼ି ଓ ଅନ୍ୟାନ୍ୟ ଗହଣା ସବୁ ତିଆରି କରଂତି । ଓଡ଼ିଶାର କେଉଁ ଅଂଚଳରେ ଏହି ହସ୍ତଶିଳ୍ପ ମୁଖ୍ୟତଃ ଦେଖିବାକୁ ମିଳିଥାଏ ?

(କ) ନବରଂଗପୁର
(ଖ) ମାଲକାନଗିରି
(ଗ) କୋରାପୁଟ

ପ୍ରଶ୍ନ-୩ : ମୟୂରଭଂଜ ଜିଲ୍ଲାରେ ମକର ପର୍ବ ସମୟରେ ଏକ ନିର୍ଦ୍ଦିଷ୍ଟ ଦେବୀଂକର ଭସାଣିପର୍ବ ଅନୁଷ୍ଠିତ ହୁଏ । ମହଂତ ଜାତିର ଅବିବାହିତା ଝିଅମାନେ ଏହି ଦେବୀଂକର ପୂଜା ସାରି ଦେବୀଂକୁ ପାଣିରେ ବିସର୍ଜନ କରିବା ପାଇଁ ଏହି ପୂଜା ଉପଲକ୍ଷେ ଉଦ୍ଦିଷ୍ଟ ଗୀତସବୁ ଗାଇ ଦଳଦଳ ହୋଇ ମେଳାଗୁଡ଼ିକୁ ଯାଇଥାଂତି । ଜିଲ୍ଲାର ବିଭିନ୍ନ ପୁଷ୍କରିଣୀ, ବଂଧ ଓ ନଈଘାଟରେ ଏହି ମେଳାମାନ ଅନୁଷ୍ଠିତ ହୁଏ । ଏହି ଦେବୀଂକ ନାମ କ'ଣ ?

(କ) ଟୁସୁଦେବୀ
(ଖ) କୀଚକେଶ୍ୱରୀ
(ଗ) ବାସୁଲୀ ଦେବୀ

ପ୍ରଶ୍ନ-୪ : ଗାଈ ବା ମଇଁଷି ଶିଂଗରୁ ତିଆରି ସୁଂଦର ସୁଂଦର ମୂର୍ତିସବୁ କେବଳ ଓଡ଼ିଶା କାହିଁକି, ଦେଶବିଦେଶରେ ଅଧିକାଂଶ ସଂଭ୍ରାଂତ ପରିବାରର ଡ୍ରଇଂ ରୁମ୍‌ରେ ଶୋଭା ପାଉଥିବାର ଦେଖାଯାଏ । ଶିଂଗ ଭଳି ଏକ ପଦାର୍ଥରୁ ଏତେ ସୂକ୍ଷ୍ମ ଓ ସୁଂଦର ମୂର୍ତି ସବୁ ତିଆରି କରିବା ପାଇଁ ଯଥେଷ୍ଟ କଳାକୁଶଳତା, କଳ୍ପନା ଓ ଦକ୍ଷତାର ଆବଶ୍ୟକତା ପଡ଼ିଥାଏ । ଦକ୍ଷିଣ ଓଡ଼ିଶାର ଏକ ନିର୍ଦ୍ଦିଷ୍ଟ ଅଂଚଳର ଶିଳ୍ପୀମାନେ ପାରଂପରିକ ଭାବେ ଏହି ଶିଂଗକାମ ପ୍ରସ୍ତୁତ କରିବାରେ ଏତେ ପାରଂଗମ ଯେ, ସେମାନଂକର କଳା ଆଜି ସାରା ବିଶ୍ୱରେ ଆଦୃତ ହୋଇଛି । ସେହି ସ୍ଥାନଟିର ନାଁ କ'ଣ ?

(କ) ପାରଳାଖେମୁଂଡି
(ଖ) ବେଲଗୁଂଠା
(ଗ) ନବରଂଗପୁର

**ପ୍ରଶ୍ନ-୫ :** ପାଦପୂରଣ କର।

(କ) ଇଟିକିଲି ମିଟିକିଲି ________ ________
(ଖ) ଚକାଚକା ଭଉଁରି ________ ________
(ଗ) ମୋ'କଥାଟି ସରିଲା ________ ________
(ଘ) ଉଦୁଉଦୁମା ________
(ଙ) ଠିଆ ପୁଚି ନାରଂଗ ________ ________ ________

**ପ୍ରଶ୍ନ-୬ :** ନିମ୍ନରେ ଦିଆଯାଇଥିବା ଶବ୍ଦଗୁଡ଼ିକ ସହିତ ତାହାର ପ୍ରକୃତ ପରିଚୟ ସମ୍ମୁଖସ୍ଥ ସ୍ତଂଭରେ ଦିଆଯାଇଛି। ସେମାନଂକୁ ମିଳାଇନିଅ।

| | |
|---|---|
| (କ) ଅଥାରହାଂଡି | (୧) ରଂଧାଭାତରୁ ତିଆରି ମଦ |
| (ଖ) ସୁନ୍ସୁନିଆ | (୨) ମହାଜନ / ଗାଁର ମୁଖିଆ |
| (ଗ) ହାଂଡିଆ | (୩) ଏଂଡୁରି ପିଠା ତିଆରି ଲାଗି ବ୍ୟବହୃତ ହାଂଡି |
| (ଘ) କୁଟୁରା | (୪) ଅଂଟାରେ ଖୋସିଲା ଭଳି ଛୋଟ ଡବା |
| (ଙ) କରାଟ | (୫) ସାନ ଝିଅମାନେ ଖେଳୁଥିବା ଏକ ଖେଳ |
| (ଚ) ଗୌଂତିଆ | (୬) ଏକ ପ୍ରକାର ବନ୍ୟଜଂତୁ |
| (ଛ) ପୁଚି | (୭) ଏକ ପ୍ରକାର ଶାଗ |

**ପ୍ରଶ୍ନ-୭ :** ଓଡ଼ିଶାରେ ପାରଂପରିକ ସଂସ୍କୃତ ଶିକ୍ଷାର ପ୍ରାଥମିକ ଶିକ୍ଷାନୁଷ୍ଠାନଗୁଡ଼ିକୁ କ'ଣ କୁହାଯାଏ ?

(କ) ଚାଟଶାଳୀ
(ଖ) ଟୋଲ୍
(ଗ) ମଦ୍ରାସା

**ପ୍ରଶ୍ନ-୮ :** ନିମ୍ନରେ ଦିଆଯାଇଥିବା ଓଡ଼ିଶାର ତିନୋଟି ପ୍ରମୁଖ ମଂଦିର ସହ, ସେହି ମଂଦିରର ସେବାୟତମାନଂକର ନାମ ମିଳାଇନିଅ।

| | |
|---|---|
| (କ) ଜଗନ୍ନାଥ ମଂଦିର | ବଡୁ |
| (ଖ) କପିଳାସର ଚଂଦ୍ରଶେଖର ମଂଦିର | ସୁଆର |
| (ଗ) ଲିଂଗରାଜ ମଂଦିର | ଚିଂତାପତ୍ରୀ |

**ପ୍ରଶ୍ନ-୯ :** ପଶ୍ଚିମ ଓଡ଼ିଶାର ଏମାନେ ଏକ ଗାୟକ ଜାତି। ଏମାନେ ଭୂଦେବୀ ବା ଶସ୍ୟଦେବୀଂକୁ ମହାଲକ୍ଷ୍ମୀ ହିସାବରେ ଉପାସନା କରଂତି ଓ ବଂଶ ପରଂପରା କ୍ରମେ ଦ୍ୱାର ଦ୍ୱାର ବୁଲି ଡୁଡୁଂଗ ବା ବୀଣାବାଦନ କରି ମାଣବସାଗାଥା ଗାନ କରଂତି। ଧାନରେ ତିଆରି ମହାଲକ୍ଷ୍ମୀ, ବରଲକ୍ଷ୍ମୀ, ଗଜଲକ୍ଷ୍ମୀ, ମାଣ, କୁଲା, ହାତୀ, ପଦ୍ମଫୁଲ, ଆସନ, ବଇଠି, ମୁକୁଟ ଓ ଖଟୁଲି ଆଦି ସେମାନେ ବୁଲିବୁଲି ବିକ୍ରି କରଂତି। ଏହାଛଡ଼ା ଜଡ଼ିବୁଟି ଓ ଗୁଣିଗାରେଡ଼ି ମଧ୍ୟ ଏମାନଂକର ଜୀବିକାର୍ଜନର ଅନ୍ୟ ଏକ ସାଧନ।

ତେବେ ଧାନରେ ତିଆରି ସୁଂଦର ହସ୍ତଶିଳ୍ପଗୁଡ଼ିକ ପାଇଁ ଏମାନେ ଖୁବ୍ ଜଣାଶୁଣା । ଏହି ସଂପ୍ରଦାୟଟିର ନାଁ କ'ଣ ?

(କ) ଦେବ୍‌ଗୁରୁ ବା ଦେବ୍‌ଗୁନିଆଁ
(ଖ) ଅଗ୍ରିଆ
(ଗ) ବଢ଼ନିଆ

**ପ୍ରଶ୍ନ-୧୦ :** ଶ୍ରାବଣ ଶୁକ୍ଳପଂଚମୀ ଦିନ ଓଡ଼ିଶାର ପୁରପଲ୍ଲୀରେ ବିଶେଷ କରି ଉପକୂଳବର୍ତ୍ତୀ ଜିଲ୍ଲାମାନଂକରେ ଏକ ନିର୍ଦ୍ଦିଷ୍ଟ ଦେବୀଂକର ପୂଜା କରାଯାଏ । ସେ ଏକ ପ୍ରକାରରେ ସର୍ପଦେବୀ । ଗ୍ରାମବାସୀମାନଂକୁ ସର୍ପାଘାତରୁ ରକ୍ଷା କରିବା ଉଦ୍ଦେଶ୍ୟରେ ଗ୍ରାମର ଦେହୁରୀ ବା ବାରିକ ତିନିଗୋଟି ଆଖି ଥିବା ଓ ମୁଂଡ଼ ଉପରେ ସର୍ପଫଣା ଥିବା ଏହି ଦେବୀଂକର ଏକ ମାଟିପିତୁଳା ଟୋକେଇରେ ରଖି ଦ୍ୱାରଦ୍ୱାର ବୁଲେ ଓ ଲୋକେ ଦେବୀଂକୁ ନାନାଦି ପିଠାପଣା ଭୋଗ ଦିଅଂତି । ଏହି ଦେବୀଂକର ନାମ କ'ଣ ?

(କ) ବାସୁକୀ
(ଖ) ଜାଗୁଲେଇ
(ଗ) ନାଗାବଳୀ

**ପ୍ରଶ୍ନ-୧୧ :** ସପ୍ତର୍ଷିଂକ ମଧ୍ୟରୁ ମରୀଚି ଋଷି ଅନ୍ୟତମ । ତେବେ ଭୁବନେଶ୍ୱରର କେଦାରଗୌରୀଠାରେ ଏକ କୁଂଡ ଅଛି, ଯାହାର ନାମ ମରୀଚିକୁଂଡ । ଯେଉଁ ସ୍ତ୍ରୀମାନଂକର ପିଲାପିଲି ହେଉ ନ ଥାଏ, ସେମାନେ ଗୋଟିଏ ଦିନ ଅଧିବାସ କରି ଏକ ନିର୍ଦ୍ଦିଷ୍ଟ ଯାତ୍ରାଦିନ ପାହାଂତାରେ ସଂତାନ କାମନା କରି ଏହି କୁଂଡପାଣିରେ ସ୍ନାନ କରଂତି । ପ୍ରତିବର୍ଷ ମରୀଚିକୁଂଡର ପାଣି ଏହି ଦିନ ନିଲାମ ହୋଇ ବହୁ ଦାମ୍‌ରେ ବିକ୍ରି ହୁଏ । ତେବେ କେଉଁ ଯାତ୍ରା ଦିନ ପାହାଂତାରେ ଏଇ କୁଂଡପାଣିରେ ସ୍ନାନ କରାଯାଏ ?

(କ) ମାଘସପ୍ତମୀ
(ଖ) ଅଶୋକାଷ୍ଟମୀ
(ଗ) ରାମନବମୀ

**ପ୍ରଶ୍ନ-୧୨ :** ଆଦିବାସୀ ଭାଷାରେ ନିମ୍ନଲିଖିତ ଶବ୍ଦଗୁଡ଼ିକ ସହିତ ତାହାର ଅର୍ଥ ସମ୍ମୁଖସ୍ଥ ସ୍ତଂଭରେ ଦିଆଯାଇଛି । ସେମାନଂକୁ ମିଳାଇନିଅ ।

| | | | |
|---|---|---|---|
| (କ) | ଡଂଗର | (୧) | ଦେବତା |
| (ଖ) | ଦିଶାରୀ | (୨) | ଅବିବାହିତା ଯୁବତୀ |
| (ଗ) | ପେନୁ | (୩) | ବଳି |
| (ଘ) | ମେରିଆ | (୪) | ପାହାଡ଼ |
| (ଙ) | ଧାଂଗଡ଼ି | (୫) | ପୂଜାରୀ |

**ପ୍ରଶ୍ନ-୧୩ :** ନିମ୍ନଲିଖିତ ଗହଣାଗୁଡ଼ିକ ଶରୀରର ଯେଉଁ ଅଂଗରେ ପିନ୍ଧାଯାଏ, ତାହା ସମ୍ମୁଖସ୍ଥ ସ୍ତଂଭରୁ ଖୋଜିନେଇ ମିଳାଇନିଅ ।

| | | | |
|---|---|---|---|
| (କ) | ଝୁଂଟିଆ | (୧) | ହାତ |
| (ଖ) | ଫେଂଡି | (୨) | ନାକ |
| (ଗ) | ଗୁଣା | (୩) | ମଥା |
| (ଘ) | ସିଂଥି | (୪) | କାନ |
| (ଙ) | ଫାଶିଆ | (୫) | ପାଦ |
| (ଚ) | ବଂଡି | (୬) | ପାଦ ଆଂଗୁଠି |

**ପ୍ରଶ୍ନ-୧୪ :** ନିମ୍ନଲିଖିତ ଶବ୍ଦଗୁଡ଼ିକ କ'ଣ ବା କାହାକୁ ବୁଝାଏ, ତାହା ସମ୍ମୁଖସ୍ଥ ସ୍ତଂଭରୁ ବାଛିନେଇ ମିଳାଇନିଅ ।

| | | | |
|---|---|---|---|
| (କ) | ଚୋଳାକନିଆ | (୧) | ମୃତବ୍ୟକ୍ତିର ଶବ ବୋହିନେଇ ଦାହ କରିବାର ଯିଏ ବ୍ୟବସ୍ଥା କରଂତି |
| (ଖ) | ମାଲଭାଇ | (୨) | ସଂତାନ ଜନ୍ମର ପାଂଚଦିନରେ ମାମୁ ଆସି ଦଉଡ଼ି ବଳିବାର ବିଧି |
| (ଗ) | ବରଧରା | (୩) | କନ୍ୟାକୁ ନିଜ ଘରକୁ ନେଇଆସି ସେଠାରେ ବିବାହ କରିବାର ବିଧି |
| (ଘ) | ମୁଖାଗ୍ନି | (୪) | ବିବାହ ପୂର୍ବଦିନ ବାରିକ, ଶଂଖୁଆ ଓ ବରଣ ସାମଗ୍ରୀ ଧରି ଭାବୀ ଜାମାତାକୁ ଯେ ବରଣ କରିଆସଂତି |
| (ଙ) | ସଂଚୁଆତି | (୫) | ଶବଦାହ ଆରଂଭରୁ ଜ୍ୟେଷ୍ଠପୁତ୍ର ଦ୍ୱାରା ଶବ ମୁଖରେ ବଳିତା ଦେଇ ଅଗ୍ନି ସଂଯୋଗ କରିବାର ବିଧି |

**ପ୍ରଶ୍ନ-୧୫ :** ଓଡ଼ିଶାର ପୁରୀ, ବଲାଂଗୀର ଓ ପାରଳାଖେମୁଂଡି ଅଂଚଳରେ ଏକ ପ୍ରାଚୀନ ଖେଳ ଏବେ ମଧ୍ୟ ଖେଳାଯାଏ, ଯେଉଁଥିରେ କି ତାସ୍ ଭଳି ଗୋଲାକାର କାର୍ଡ ସବୁ ବ୍ୟବହାର କରାଯାଇଥାଏ ଏବଂ ସେଥିରେ ପଟ୍ଟଚିତ୍ର ଭଳି ଏକ ନିର୍ଦ୍ଦିଷ୍ଟ ଶୈଳୀରେ ରାମ, ରାବଣ, କାର୍ତ୍ତିକେୟ, ଗଣେଶ ଆଦି ବିଭିନ୍ନ ପୌରାଣିକ ଚରିତ୍ରମାନଂକର ଛବି ନାନା ରଂଗରେ ଅଂକାଯାଇଥାଏ । ଏହି ଖେଳର ନାମ କ'ଣ ?

(କ) ଚଉପାର

(ଖ) ଗଂଜପା

(ଗ) ଚଉରଂଗ

# ଆଦିବାସୀ ଓ ଜନଜୀବନ

## ଉତ୍ତରମାଳା

୧. (କ) ଅନୁଗୁଳ

୨. (କ) ନବରଂଗପୁର

୩. (କ) ଟୁସୁଦେବୀ

୪. (କ) ପାରଳାଖେମୁଣ୍ଡି

୫. (କ) ଫୁଟିଗଲା କାଙ୍ଗଚ
(ଖ) ମାମୁଘର ଚଉଁରୀ
(ଗ) ଫୁଲ ଗଛଟି ମରିଲା
(ଘ) ତାଳଗୋଟମା
(ଙ) ଗୋଡ଼ ଦୁଇଟା ସାରଂଗ

୬. (କ) ଅଥାର ହାଂଡି : ଏଣ୍ଡୁରି ପିଠା, (ଖ) ସୁନ୍‌ସୁନିଆ : ଏକ ପ୍ରକାର ଶାଗ
(ଗ) ହାଂଡିଆ : ରନ୍ଧାଭାତରୁ ତିଆରି ମଦ, (ଘ) କୁଟୁରା : ଏକ ବନ୍ୟଜନ୍ତୁ
(ଙ) କରାଟ : ଅଂଟାଖୋସା ଡବା, (ଚ) ଗୌଂତିଆ : ମହାଜନ/ଗାଁର ମୁଖିଆ
(ଛ) ପୁଚି : ଝିଅମାନଂକ ଖେଳ

୭. (ଖ) ଟୋଲ୍

୮. (କ) ଜଗନ୍ନାଥ ମଂଦିର-ସୁଆର
(ଖ) କପିଳାସ ମଂଦିର-ଚିଂତାପତ୍ରୀ
(ଗ) ଲିଂଗରାଜ ମଂଦିର-ବଡୁ

୯. (କ) ଦେବ୍‌ଗୁରୁ ବା ଦେବ୍‌ଗୁନିଆ

୧୦. (ଖ) ଜାଗୁଲେଇ

୧୧. (ଖ) ଅଶୋକାଷ୍ଟମୀ

୧୨. (କ) ଡଂଗର : ପାହାଡ଼, (ଖ) ଦିଶାରୀ : ପୂଜାରୀ
(ଗ) ପେନୁ : ଦେବତା, (ଘ) ମେରିଆ : ବଳି
(ଙ) ଧାଂଗଡ଼ି : ଅବିବାହିତା ଯୁବତୀ

୧୩. (କ) ଝୁଂଟିଆ : ପାଦ, (ଖ) ଫେଂଡି : କାନ, (ଗ) ଗୁଣା : ନାକ
(ଘ) ସିଂଥି : ମଥା, (ଙ) ଫାଶିଆ : କାନ, (ଚ) ଦଂଡି : ନାକ

୧୪. (କ)-୩, (ଖ)-୧, (ଗ)-୪, (ଘ)-୫, (ଙ)-୨

୧୫. (ଖ) ଗଂଜପା

# ମଂଦିରମାଳିନୀ ଓଡ଼ିଶା

*"ରହିଛି ମଂଦିର-ଲଲାଟେ; ବୁଲି ଦେଖିଛି କେତେ;*
*ସୂଚୀ-ଶିଳ୍ପ, କାରୁ-ଖୋଦନ, ଟୁଂଗ ମୂରତି ଯେତେ ।*
*ତୁହିନ-ମୟୂଖ-ରସାଣେ ସବୁ ଦିଶିଲା ତୋରା,*
*ଜୀର୍ଣ୍ଣ କଳଂକିତ ପଥର, ସବୁ ଲାବଣ୍ୟ ଭରା ।"*

- ପଂଡିତ ନୀଳକଂଠ ଦାସ

**ବ**ହୁ ପୁରାକାଳରୁ ଓଡ଼ିଶା ତା'ର ସାଂସ୍କୃତିକ ପରଂପରା ଧର୍ମଧାରଣା ଓ କଳା ଭାସ୍କର୍ଯ୍ୟ ପାଇଁ ସାରା ଦେଶରେ ନିଜର ସ୍ୱାତଂତ୍ର୍ୟ ବଜାୟ ରଖିଛି । ବୈଦିକ ସଭ୍ୟତା ଓ ସଂସ୍କୃତିର ପୂର୍ବରୁ ମଧ୍ୟ ଏ ଭୂଖଂଡରେ ଉନ୍ନତର ସଭ୍ୟତା ପରିବ୍ୟାପ୍ତ ହୋଇଥିଲା । ଜଗନ୍ନାଥ ସଂସ୍କୃତି ତା'ର ପ୍ରକୃଷ୍ଟ ଉଦାହରଣ । ପରବର୍ତ୍ତୀ ସମୟରେ ଏ ରାଜ୍ୟରେ ଜୈନ, ବୌଦ୍ଧ, ନାଥ ଓ ସନାତନ ବ୍ରାହ୍ମଣ୍ୟ ଧର୍ମର ନିର୍ଯାସ ସମ୍ମିଳିତ ହୋଇ ଏକ ସମନ୍ୱୟୀ ପରଂପରା ସୃଷ୍ଟି କରିଛି । ଖାଲି ଭାସ୍କର୍ଯ୍ୟ ଓ କାରୁକାର୍ଯ୍ୟପୂର୍ଣ୍ଣ ମଂଦିର ନୁହେଁ, ଗାଁ ଗହଳ, ଘଂଚ ଅରଣ୍ୟ, ପାହାଡ଼ ପର୍ବତ, ଗୁଂଫା ଓ ବୃକ୍ଷମୂଳରେ ମଧ୍ୟ ଏଠାରେ ଦେବାଦେବୀମାନେ ପୂଜିତ ହେଉଛଂତି ଏବଂ ସେହିମାନେ ହିଁ ଏ ଜାତିର ଇତିହାସ ଓ ସାମାଜିକ ଗଣଜୀବନର ମୂକସାକ୍ଷୀ ।

**ପ୍ରଶ୍ନ-୧ :** ମଂଦିର ନିର୍ମାଣକାଳ ନିରୂପଣ କରି ନିମ୍ନଲିଖିତ ମଂଦିରଗୁଡ଼ିକୁ ସର୍ବପ୍ରାଚୀନରୁ ସର୍ବାଧୁନିକ କ୍ରମରେ ସଜାଇ ଦିଅ ।

(କ) ଜଗନ୍ନାଥ ମଂଦିର
(ଖ) କୋଣାର୍କ ସୂର୍ଯ୍ୟ ମଂଦିର
(ଗ) ରାଜାରାଣୀ ମଂଦିର
(ଘ) ମୁକ୍ତେଶ୍ୱର ମଂଦିର
(ଙ) ନୃସିଂହନାଥ ମଂଦିର
(ଚ) ଅନଂତ ବାସୁଦେବ ମଂଦିର
(ଛ) ଲିଂଗରାଜ ମଂଦିର

**ପ୍ରଶ୍ନ-୨ :** ନିମ୍ନଲିଖିତ କ୍ଷେତ୍ରଗୁଡ଼ିକ କେଉଁ ସ୍ଥାନକୁ ବୁଝାଏ ?

(କ) ଅର୍କ କ୍ଷେତ୍ର
(ଖ) ଏକାମ୍ର କ୍ଷେତ୍ର
(ଗ) ଶଂଖ କ୍ଷେତ୍ର
(ଘ) ନାଭିଗୟା କ୍ଷେତ୍ର
(ଙ) ତୁଳସୀ କ୍ଷେତ୍ର

**ପ୍ରଶ୍ନ-୩ :** ନିମ୍ନରେ କିଛି ଦେବାଦେବୀଙ୍କ ନାମ ସହ କେତେଗୁଡ଼ିଏ ପୀଠସ୍ଥାନର ନାମ ଦିଆଯାଇଛି । ଉଭୟକୁ ମିଳାଇ ନିଅ ।

| | | | |
|---|---|---|---|
| (କ) | ଆଖଂଡଳମଣି | (୧) | ଶରଣକୂଳ |
| (ଖ) | ଖଂବେଶ୍ୱରୀ | (୨) | ପୁରୁଷୋତ୍ତମପୁର |
| (ଗ) | କ୍ଷୀରଚୋରା ଗୋପୀନାଥ | (୩) | ଭଦ୍ରକ |
| (ଘ) | ଲଡୁବାବା | (୪) | ଆରଡ଼ି |
| (ଙ) | ତାରିଣୀ | (୫) | ଚଂଡୀଖୋଲ |
| (ଚ) | ଲଂକେଶ୍ୱରୀ | (୬) | ରେମୁଣା |
| (ଛ) | ମହାବିନାୟକ | (୭) | ଆସିକା |
| (ଜ) | ବୁଢ଼ାରଜା | (୮) | ଜୁନାଗଡ଼ |
| (ଝ) | ଭଦ୍ରକାଳୀ | (୯) | ଘଟଗାଁ |
| (ଞ) | ତାରାତାରିଣୀ | (୧୦) | ସଂବଲପୁର |

**ପ୍ରଶ୍ନ-୪ :** ନିମ୍ନରେ କେତେଗୁଡ଼ିଏ ସ୍ଥାନର ନାମ ଦିଆଯାଇଛି । ସେହି ସ୍ଥାନରେ ଅଧିଷ୍ଠିତ ସର୍ବପ୍ରମୁଖ ଦେବୀ/ଦେବତାଙ୍କର ନାମ କ'ଣ ?

| | | | |
|---|---|---|---|
| (କ) | ସଂବଲପୁର | (ଚ) | ଖିଚିଂ |
| (ଖ) | ଭବାନୀପାଟଣା | (ଛ) | କାକଟପୁର |
| (ଗ) | ବାଁକୀ | (ଜ) | ବାଣପୁର |
| (ଘ) | କଂଟିଲୋ | (ଝ) | ଭୁବନେଶ୍ୱର |
| (ଙ) | ଝଂକଡ଼ | (ଞ) | ପାଟନାଗଡ଼ |

**ପ୍ରଶ୍ନ-୫ :** ଉତ୍କଳର ଆରାଧ୍ୟ ଦେବତା ଶ୍ରୀଜଗନ୍ନାଥ ବିଭିନ୍ନ ସମୟରେ ବହୁ ବିବାଦ, ଆକ୍ରୋଶ ଓ ଆକ୍ରମଣର ଶିକାର ହୋଇଛଂତି । ସେହିଭଳି ଏକ ଘଟନା ୧୮୮୧ ସାଲ୍ ମାର୍ଚ୍ଚ ୧ ତାରିଖରେ ଘଟିଥିଲା । ଏହି ଦିନ ଏକ ନିର୍ଦ୍ଦିଷ୍ଟ ସଂପ୍ରଦାୟର ଶତାଧିକ ଲୋକ ଏକ ଦଳରେ ପୁରୀ ଆସି ଶ୍ରୀମଂଦିର ଉପରେ ଆକ୍ରମଣ କରିଥିଲେ । ମଂଦିରର ସେବାୟତ ଓ ଆକ୍ରମଣକାରୀଙ୍କ ମଧ୍ୟରେ ହୋଇଥିବା ସଂଘର୍ଷରେ ଆକ୍ରମଣକାରୀଙ୍କ ଭିତରୁ ଜଣେ ଆହତ ହୋଇ ପରେ ମୃତ୍ୟୁବରଣ କରିଥିଲେ । ଏ ସଂପର୍କରେ ହୋଇଥିବା ମୋକଦ୍ଦମାର କାଗଜପତ୍ର ଏବେ ମଧ୍ୟ ଗଚ୍ଛିତ ଅଛି । ତେବେ କେଉଁ ସଂପ୍ରଦାୟର ଲୋକେ ଏଭଳି ଆକ୍ରମଣ କରିଥିଲେ ?

(କ) ମୁସଲମାନ ଧର୍ମ
(ଖ) ମହିମା ଧର୍ମ
(ଗ) ଆନଂଦମାର୍ଗୀ ସଂପ୍ରଦାୟ

ପ୍ରଶ୍ନ-୬ : ତାଳଚେରର ପଶ୍ଚିମ ଦିଗରେ ୨୨ କି.ମି. ଦୂରବର୍ତୀ ଗୋପାଳପ୍ରସାଦ ଗାଁରେ ଏକ ଠାକୁରାଣୀଙ୍କର ପୀଠ ଅଛି। ଚୈତ୍ରମାସରେ ଏକ ନିର୍ଦ୍ଦିଷ୍ଟ ଦିନ ଠାକୁରାଣୀ ଅଗ୍ନିରୂପରେ ଉଭା ହୁଅଂତି। ଦେବୀଙ୍କର ଅଗ୍ନିସ୍ୱରୂପ ଦେହୁରୀକୁ ଦର୍ଶନ ହୁଏ ଓ ମଂତ୍ରଶକ୍ତି ବଳରେ ଦେହୁରୀ ଅଗ୍ନିସ୍ୱରୂପା ଦେବୀଙ୍କୁ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ରଖେ। ଏହି ଅଗ୍ନିକୁ କୋଇଲାଦ୍ୱାରା ପ୍ରଜ୍ୱଳିତ କରି ରଖାଯାଏ। ନଅ ଦିନ ପର୍ଯ୍ୟଂତ ଦୂରଦୂରାଂତରୁ ଭକ୍ତମାନେ ଆସି ଦେବୀଙ୍କର ପୂଜାର୍ଚ୍ଚନା କରଂତି ଓ ନଅ ଦିନ ପରେ ଅଗ୍ନିକୁ ପଣା ଓ ପଂଚାମୃତ ଦେଇ ନିର୍ବାପିତ କରାଯାଏ। ତା'ପରେ ଦେବୀ ନିଜ ଆସ୍ଥାନକୁ ଫେରିଯାଆଂତି। ଅଗ୍ନିସ୍ୱରୂପା ଏହି ଦେବୀଙ୍କର ନାଁ କ'ଣ ?

(କ) ଉଗ୍ରତାରା
(ଖ) ଭଦ୍ରକାଳୀ
(ଗ) ହିଂଗୁଳା

ପ୍ରଶ୍ନ-୭ : ଶ୍ରୀମଂଦିରର ପ୍ରତ୍ୟେକ ରୀତିନୀତିର ଏକ ସ୍ୱାତଂତ୍ର୍ୟ ରହିଛି ଏବଂ ଠାକୁରଂଙ୍କର ପ୍ରାୟ ପ୍ରତ୍ୟେକ ଦୈନିକ ନୀତି ପାଇଁ ଏକ ସ୍ୱତଂତ୍ର ନାମ ରହିଛି। ସେଥି ମଧ୍ୟରୁ ଗୋଟିଏ ହେଉଛି 'ମଇଲମଲାଗି'। ଶ୍ରୀମଂଦିର ଭାଷାରେ 'ମଇଲମଲାଗି' କହିଲେ କ'ଣ ବୁଝାଯାଏ ?

(କ) ଠାକୁରଂଙ୍କ ବିଗ୍ରହରେ ଚଂଦନଲାଗି
(ଖ) ମଂଗଳଆରତି ବିଧି
(ଗ) ପୋଷାକ ତଥା ଅଳଂକାର ପରିବର୍ତ୍ତନ

ପ୍ରଶ୍ନ-୮ : ଓଡ଼ିଶାରେ ହିଂଦୁ ଓ ମୁସଲମାନ ମୈତ୍ରୀର ଏକ ନିଦର୍ଶନ ହେଉଛି ପୀରବୁଖାରୀ ସାହେବଂଙ୍କର ପୀଠ। ପ୍ରତି ଗୁରୁବାର ଦିନ ଏଠାରେ ମେଳା ବସେ ଓ ହିଂଦୁ ମୁସଲମାନ ଉଭୟ ଧର୍ମର ଭକ୍ତ ବହୁ ଦୂରଦୂରାଂତରରୁ ଆସଂତି ନିଜର ମାନସିକ ଜଣାଇବା ପାଇଁ। ସେମାନେ ନିଜର କାମନା ଏକ କାଗଜରେ ଲେଖିଦେଇ ଏଠାରେ ଝୁଲାଇଦେଇ ଯାଆଂତି ଓ ମାନସିକ ପୂରଣ ହେବାର ସଂକେତ ସ୍ୱରୂପ ଏହି କାଗଜଟି ଖସିପଡ଼େ ବୋଲି ଭକ୍ତମାନଂଙ୍କ ବିଶ୍ୱାସ। ବୁଖାରୀ ସାହେବଂଙ୍କର ଏହି ପୀଠ ଖୋର୍ଦ୍ଧା ଜିଲ୍ଲାରେ ଅବସ୍ଥିତ। ତେବେ ଏହି ସ୍ଥାନଟିର ନାଁ କ'ଣ ?

(କ) କେରଂଗ
(ଖ) କାଇପଦର
(ଗ) ବେନୁପଡ଼ା

ପ୍ରଶ୍ନ-୯ : ବ୍ରହ୍ମପୁର ସହରର ଦକ୍ଷିଣ-ପଶ୍ଚିମ ଦିଗକୁ ପ୍ରାୟ ୧୦ କି.ମି. ଦୂରରେ ଅବସ୍ଥିତ ଏକ ଛୋଟ ଗାଁ। ଗାଁଟିର ନାମ 'ପଂଚମା'। ଏହି ଗାଁରେ ଥିବା ଏକ ବର-ଅଶ୍ୱତ୍ଥ ଯୁଗଳବୃକ୍ଷର କୋରଡ଼ରେ ଜଣେ ଦେବତା ଅବସ୍ଥାପିତ। ସମୟକ୍ରମେ ଅବଶ୍ୟ

ବଟବୃକ୍ଷଟି ନଷ୍ଟ ହୋଇଯାଇଛି । ମାତ୍ର କିଂବଦଂତୀରୁ ଜଣାଯାଏ ଯେ, ଗଜପତି ରାଜା ପୁରୁଷୋତ୍ତମଦେବ ଦ୍ୱିତୀୟ ଥର କାଂଚି ଅଭିଯାନରେ ଯିବା ସମୟରେ ଏହି ବୃକ୍ଷ କୋରଡ଼ରେ ଉଠିଥିବା ଉଇହୁଂକାକୁ ଧୋଇ ସେଠାରୁ ଏହି ଠାକୁରଂକ ମୂର୍ତିକୁ ଆବିଷ୍କାର କରିଥିଲେ । ଏହି ଠାକୁର କିଏ ?

(କ) ଗୋକର୍ଣ୍ଣେଶ୍ୱର (ଶିବ)
(ଖ) ସିଦ୍ଧଭୈରବୀ
(ଗ) ସିଦ୍ଧଗଣେଶ

ପ୍ରଶ୍ନ-୧୦ : ଓଡ଼ିଶାର ଏକ ଜଣାଶୁଣା ସହରର ଉପକଂଠରେ ପାହାଡ଼ଟିଏ ଅଛି । ସେହି ପାହାଡ଼ର ଏକ ପାର୍ଶ୍ୱରେ ଠାକୁରାଣୀ ମଂଦିରଟିଏ ଅଛି । ଏହି ପାହାଡ଼କୁ 'ସୁନାଶଗଡ଼ ପାହାଡ଼' ବୋଲି କୁହାଯାଏ । ଏକ କିଂବଦଂତୀ ଅଛି ଯେ, ଏହି ପାହାଡ଼ ତଳେ ଫାଂକାସ୍ଥାନ ରହିଛି ଓ ସେଠାରେ ଏକ ସୁନାଶଗଡ଼ରେ ପାଂଡବମାନଂକର ଅସ୍ତ୍ରଶସ୍ତ୍ର ସଜ୍ଜିତ ହୋଇରହିଛି । ମହାଭାରତ ଯୁଦ୍ଧ ଆଉ ଓଳିଏ ବାକି ଅଛି ବୋଲି କୁହାଯାଇଥାଏ । ଏଇ କଳିଯୁଗରେ ତାହା ଆରଂଭ ହେଲେ ପାଂଡବମାନେ ସେଇ ଅସ୍ତ୍ରଶସ୍ତ୍ର ନେଇ ଯୁଦ୍ଧ କରିବେ । ଠାକୁରାଣୀ ଯେଉଁଠାରେ ଅଛଂତି, ତାହା ପାହାଡ଼ ଭିତରକୁ ପ୍ରବେଶଦ୍ୱାର ଏବଂ ସେ ଏହି ଅସ୍ତ୍ରଶସ୍ତ୍ର ଜଗିରହିଛଂତି ବୋଲି ମଧ୍ୟ କୁହାଯାଇଥାଏ । ଏହି ଠାକୁରାଣୀଂକ ନାଁ 'ବୁଢ଼ୀ ଠାକୁରାଣୀ' । ତେବେ ଏହି ସହରଟିର ନାଁ କ'ଣ ?

(କ) ରାଉରକେଲା
(ଖ) କୋରାପୁଟ
(ଗ) ଅନୁଗୁଳ

ପ୍ରଶ୍ନ-୧୧ : ପଶ୍ଚିମ ଓଡ଼ିଶାର ଏକ ମଂଦିରରେ ଅବସ୍ଥାପିତ ଠାକୁରଂକର ମୁଖ ବିରାଡ଼ିର ମୁହଁ ପରି । ମଂଦିରଟି ଏକ ମନୋରମ ପ୍ରାକୃତିକ ପରିବେଶ ମଧ୍ୟରେ ଅବସ୍ଥିତ ହୋଇଥିବାରୁ ପର୍ଯ୍ୟଟକମାନଂକର ଆକର୍ଷଣର କେଂଦ୍ର । ମଂଦିରଟିର ନାଁ କ'ଣ ?

(କ) ପାର୍ଥସାରଥି ମଂଦିର
(ଖ) ସୁରଂଗୀନାଥ ମଂଦିର
(ଗ) ନୃସିଂହନାଥ ମଂଦିର

ପ୍ରଶ୍ନ-୧୨ : ଫୁଲବାଣୀ ଜିଲ୍ଲାର ପାହାଡ଼ ପର୍ବତଘେରା ମନୋରମ ପରିବେଶ ମଧ୍ୟରେ ବ୍ରୃଂଗ ନଦୀକୂଳରେ ଏକ ଶିବମଂଦିର ଅବସ୍ଥିତ । ଏହି ମଂଦିରର ଏକ ବିଶେଷତ୍ୱ ଯେ, ମଂଦିର ନିକଟରେ ଥିବା ସବୁ ଗଛଗୁଡ଼ିକ ଦକ୍ଷିଣ ଦିଗକୁ ଢଳିରହିଛି । ଏପରି କି ମଂଦିରରେ ପୂଜା ପାଉଥିବା ଶିବଲିଂଗ ମଧ୍ୟ ସାମାନ୍ୟ ଦକ୍ଷିଣକୁ ଢଳିରହିଛଂତି । ସ୍ଥାନଟିର ନାଁ କ'ଣ ?

(କ) ଚାରିଶଂଭୁ
(ଖ) ଚକାପାଦ
(ଗ) ପୁରୁଣା କଟକ

**ପ୍ରଶ୍ନ-୧୩ :** ଭୁବନେଶ୍ୱରସ୍ଥିତ ରାଜାରାଣୀ ମଂଦିରର ମନୋରମ ନିର୍ମାଣଶୈଳୀ ଦେଶବିଦେଶରୁ ବହୁ ପର୍ଯଟକଙ୍କୁ ଆକୃଷ୍ଟ କରିଥାଏ । ଏହି ମଂଦିରରେ ଲାସ୍ୟମୟୀ ନାୟିକା ଓ ଦଶଦିଗପାଳଂକର ଆକର୍ଷଣୀୟ ମୂର୍ତି ଯେ କୌଣସି କଳାପ୍ରେମୀ ଦର୍ଶକକୁ ଅଭିଭୂତ କରେ । ତେବେ ପ୍ରଶ୍ନଟି ହେଉଛି ଯେ – ଏହି ମଂଦିରର ନାମ 'ରାଜାରାଣୀ ମଂଦିର' ହେବାର କାରଣ କ'ଣ ?

(କ) ରାଜା ଉଦ୍ୟୋତ କେଶରୀ ଓ ରାଣୀ କଳାବତୀ ଏହାକୁ ନିର୍ମାଣ କରାଇଥିବାରୁ ଏହାର ନାମ ରାଜାରାଣୀ ମଂଦିର ରଖାଯାଇଛି ।

(ଖ) ଏହି ମଂଦିରରେ ଶିବ ଓ ପାର୍ବତୀଂକୁ ରାଜା ଓ ରାଣୀ ରୂପରେ ପୂଜା କରାଯାଏ ।

(ଗ) ଏହି ମଂଦିର ନିର୍ମାଣରେ ବ୍ୟବହୃତ 'ରାଜାରାଣିଆ' ପଥରର ନାମ ଅନୁସାରେ ଏହାର ନାମକରଣ 'ରାଜାରାଣୀ ମଂଦିର' ହୋଇଛି ବୋଲି ଗବେଷକଂକ ମତ ।

**ପ୍ରଶ୍ନ-୧୪ :** ପଶ୍ଚିମ ଓଡ଼ିଶାର ଏକ ନିର୍ଦ୍ଦିଷ୍ଟ ସହରରେ ଏକ ଅମୁହାଁ ମଂଦିର ଅଛି । ଯାହାର ନାଁ ସ୍ନାନଦେଈ ମାଲୁଣୀ ମଂଦିର । ଏହା ଭିତରକୁ କୌଣସି ପ୍ରବେଶ ପଥ ନାହିଁ । ସପ୍ତଦଶ ଶତାବ୍ଦୀରେ କବି ପ୍ରତାପ ରାୟଂକ ରଚିତ 'ଶଶିସେଣା' କାବ୍ୟରେ ସ୍ନାନଦେଈ ମାଲୁଣୀର ତଂତ୍ର ଓ ଯାଦୁବିଦ୍ୟା ପ୍ରସଂଗ ବର୍ଣ୍ଣିତ ଅଛି । ଏହି ସ୍ନାନଦେଈ ମାଲୁଣୀ ମଂଦିର ନିକଟରେ ଏକ ପୁଷ୍କରିଣୀ ଅଛି, ଯାହାର ନାମ 'ଶଶିସେଣା ବଂଧ' । ତେବେ ଏହି ମଂଦିରଟି କେଉଁଠାରେ ଅବସ୍ଥିତ ?

(କ) ସୋନପୁର

(ଖ) ପାଟନାଗଡ଼

(ଗ) ରାଣୀପୁର-ଝରିଆଲ

**ପ୍ରଶ୍ନ-୧୫ :** କଟକ ସହରରେ ମୁସଲମାନ ଭାଇମାନଂକର ଏକ ଧର୍ମପୀଠ ରହିଛି, ଯାହା କି ଓଡ଼ିଶାରେ ମୋଗଲ ନିର୍ମାଣ କଳାର ସର୍ବଶ୍ରେଷ୍ଠ ନିଦର୍ଶନ ବୋଲି ଗବେଷକମାନେ ଗ୍ରହଣ କରଂତି । ଏକ ଅଷ୍ଟଭୁଜାକୃତି ମୂଳଦୁଆ ଉପରେ ପ୍ରତିଷ୍ଠିତ ଏହି ପୀଠରେ ମହମ୍ମଦଂକର ପବିତ୍ର ପଦଚିହ୍ନ ରହିଛି । ଏହି ପବିତ୍ର ଉପାସନାପୀଠର ନାଁ କ'ଣ ?

(କ) ମହମ୍ମଦିଆ ବଜାରସ୍ଥିତ ମସ୍‌ଜିଦ୍

(ଖ) କଦମ୍‌ରସୁଲ

(ଗ) ଜୁମା ମସ୍‌ଜିଦ୍

# ମଂଦିରମାଳିନୀ ଓଡ଼ିଶା

## ଉତ୍ତରମାଳା

୧. ରାଜାରାଣୀ ମଂଦିର (୭ମ ଶତାବ୍ଦୀ), ମୁକ୍ତେଶ୍ୱର ମଂଦିର (୯ମ ଶତାବ୍ଦୀ), ଲିଂଗରାଜ ମଂଦିର (୧୧ଶ ଶତାବ୍ଦୀ), ଜଗନ୍ନାଥ ମଂଦିର (୧୨ଶ ଶତାବ୍ଦୀ), କୋଣାର୍କ ମଂଦିର (୧୩ଶ ଶତାବ୍ଦୀ), ନୃସିଂହନାଥ ମଂଦିର (୧୫ଶ ଶତାବ୍ଦୀ), ଅନଂତ ବାସୁଦେବ ମଂଦିର (୧୮ଶ ଶତାବ୍ଦୀ)

୨. (କ) ଅର୍କ କ୍ଷେତ୍ର : କୋଣାର୍କ, (ଖ) ଏକାମ୍ର କ୍ଷେତ୍ର : ଭୁବନେଶ୍ୱର, (ଗ) ଶଂଖ କ୍ଷେତ୍ର : ପୁରୀ, (ଘ) ନାଭିଗୟା କ୍ଷେତ୍ର : ଯାଜପୁର, (ଙ) ତୁଳସୀ କ୍ଷେତ୍ର : କେଂଦ୍ରାପଡ଼ା

୩. (କ) ଆଖଂଡଳମଣି : ଆରଡ଼ି
(ଖ) ଖଂବେଶ୍ୱରୀ : ଆସିକା
(ଗ) କ୍ଷୀରଚୋରା ଗୋପୀନାଥ : ରେମୁଣା
(ଘ) ଲଡ୍ଡୁବାବା : ଶରଣକୂଳ
(ଙ) ଚାରିଣୀ : ଘଟଗାଁ
(ଚ) ଲଂକେଶ୍ୱରୀ : ଜୁନାଗଡ଼
(ଛ) ମହାବିନାୟକ : ଚଂଡୀଖୋଲ
(ଜ) ବୁଢ଼ାରଜା : ସଂବଲପୁର
(ଝ) ଭଦ୍ରକାଳୀ : ଭଦ୍ରକ
(ଞ) ତାରାତାରିଣୀ : ପୁରୁଷୋତ୍ତମପୁର

୪. (କ) ସଂବଲପୁର : ସମଲେଶ୍ୱରୀ
(ଖ) ଭବାନୀପାଟଣା - ମାଣିକେଶ୍ୱରୀ
(ଗ) ବାଂକୀ - ଚର୍ଚ୍ଚିକା
(ଘ) କଂଟିଲୋ - ନୀଳମାଧବ
(ଙ) ଝଂକଡ଼ - ଶାରଳା
(ଚ) ଖିଚିଂ : କୀଚକେଶ୍ୱରୀ
(ଛ) କାକଟପୁର : ମଂଗଳା
(ଜ) ବାଣପୁର : ଭଗବତୀ
(ଝ) ଭୁବନେଶ୍ୱର : ଲିଂଗରାଜ
(ଞ) ପାଟନାଗଡ଼ : ପାଟନେଶ୍ୱରୀ

୫. (ଖ) ମହିମା ଧର୍ମ

୬. (ଗ) ହିଂଗୁଳା

୭. (ଗ) ପୋଷାକ ତଥା ଅଳଂକାର ପରିବର୍ତ୍ତନ

୮. (ଖ) କାଇପଦର

୯. (ଗ) ସିଦ୍ଧ ଗଣେଶ

୧୦. (ଗ) ଅନୁଗୁଳ

୧୧. (ଗ) ନୃସିଂହନାଥ ମଂଦିର

୧୨. (ଖ) ଚକାପାଦ

୧୩. (ଗ) ରାଜାରାଣିଆ ପଥର ନାମରେ ମଂଦିରର ନାମକରଣ ହୋଇଛି ବୋଲି ଗବେଷକଙ୍କ ମତ

୧୪. (କ) ସୋନପୁର

୧୫. (ଖ) କଦମ୍ବରସୁଲ୍

# ପର୍ବପର୍ବାଣୀ / ଯାନିଯାତ୍ରା

*"ଡୋଳି ହୁଏ ଗମେଟ ସଂଗାତ ଲୋ ଡୋଳି ହୁଏ ଗମେଟ;*
*ମୋ ଭାଇ ମୁଣ୍ଡରେ ସୁନା ମୁକୁଟ ଲୋ ଦିଶୁଥିବ ଝଟଝଟ"*

- ରଜଦୋଳି ଗୀତ

ଓଡ଼ିଶାର ପର୍ବପର୍ବାଣୀ, ଓଷାବ୍ରତ ଓ ଯାନିଯାତ୍ରା ମହାଭାରତୀୟ ସ୍ରୋତରୁ ଭିନ୍ନ ନୁହେଁ । ଅନେକଗୁଡ଼ିଏ ମହାଭାରତୀୟ ପର୍ବପର୍ବାଣୀ, ଓଷାବ୍ରତ ଓଡ଼ିଶାରେ ମଧ୍ୟ ପ୍ରଚଳିତ । ମାତ୍ର ଓଡ଼ିଶାର ସଂସ୍କୃତି ଓ ପରଂପରାର ଏକ ନିଜସ୍ୱ ପରିଚୟ ଅଛି । ସ୍ଥାନୀୟ ଗଣଜୀବନର ରୀତିନୀତି, କୃଷିକର୍ମ, ଦେବଦେବୀ, ଶାସ୍ତ୍ରୀୟ କାହାଣୀ, ଲୋକକଥା ଆଦି ସହ ଜଡ଼ିତ ହୋଇ ଅନେକ ପର୍ବପର୍ବାଣୀ ଓ ଯାନିଯାତ୍ରା ଏଠାରେ ପାଳିତ ହୁଏ ।

ପ୍ରଶ୍ନ-୧ : ବୃକ୍ଷମୂଳରେ ଜଳଦାନର ପରଂପରା ଆମ ରାଜ୍ୟର ଘରେ ଘରେ ପ୍ରଚଳିତ । ମାତ୍ର ଏକ ନିର୍ଦ୍ଦିଷ୍ଟ ପର୍ବ ଅବସରରେ ଚଉରାରେ ପୂଜା ପାଉଥିବା ତୁଳସୀ ଗଛ ଉପରେ ଛାମୁଂଡିଆ କରି ସେଥିରେ ଏକ ଜଳପୂର୍ଣ୍ଣ ଘଡ଼ି ଟାଂଗି ଦିଆଯାଏ । ସେହି ଘଡ଼ିର ନିମ୍ନ ଭାଗରେ ଏକ ସୂକ୍ଷ୍ମ ରନ୍ଧ୍ରରୁ ସରୁଧାରରେ ତୁଳସୀ ଗଛ ଉପରେ ଜଳ ପ୍ରଦାନ କରାଯାଏ । ଏହି ପର୍ବଟିର ନାମ କ'ଣ ?

(କ) ଅକ୍ଷୟ ତୃତୀୟା
(ଖ) ସ୍ନାନ ପୂର୍ଣ୍ଣିମା
(ଗ) ବିଷୁବ ସଂକ୍ରାଂତି

ପ୍ରଶ୍ନ-୨ : 'କରମା ପୂଜା' ପଶ୍ଚିମ ଓଡ଼ିଶାର ଆଦିବାସୀମାନଂକର ଏକ ମୁଖ୍ୟ ପର୍ବ । ବର୍ଷରେ ଆଷାଢ଼, ଭାଦ୍ରବ, କାର୍ତ୍ତିକ ଓ ମାଘ ମାସ ଶୁକ୍ଳ ଏକାଦଶୀ ଦିନ ଯେଉଁ ଚାରୋଟି ବଡ଼ ଏକାଦଶୀ ପଡ଼େ, ସେଥି ମଧ୍ୟରୁ ଗୋଟିଏ ଏକାଦଶୀ ଦିନ ଆଦିବାସୀମାନେ କରମା ବ୍ରତ ପାଳନ କରଂତି ଓ ଏହି ଦିନ ମାଦଳ ବାଦ୍ୟ ଏବଂ ନୃତ୍ୟରେ ପାର୍ବତ୍ୟଭୂମି ମୁଖରିତ ହୋଇଉଠେ । କେଉଁ ମାସର ଶୁକ୍ଳପକ୍ଷ ଏକାଦଶୀ ଦିନ ଏହି ବ୍ରତ ପାଳିତ ହୁଏ ?

(କ) ଭାଦ୍ରବ
(ଖ) ମାଘ
(ଗ) କାର୍ତ୍ତିକ

ପ୍ରଶ୍ନ-୩ : ବର୍ଷରେ ଯେଉଁ ବାରଟି ସଂକ୍ରାନ୍ତି ପଡ଼େ, ସେଥିରୁ ଗୋଟିକର ନାଁ 'ଗର୍ଭଣା ସଂକ୍ରାନ୍ତି'। କାର୍ତ୍ତିକ ବା ତୁଳାମାସର ସଂକ୍ରାନ୍ତିକୁ 'ଗର୍ଭଣା ସଂକ୍ରାନ୍ତି' ରୂପେ ଓଡ଼ିଶାର ପୁରପଲ୍ଲୀରେ ଗଭୀର ନିଷ୍ଠା ଓ ଭକ୍ତି ସହିତ ପାଳନ କରାଯାଏ। ତେବେ ଏହି ଦିନ କାହାର ପୂଜା କରାଯାଏ ?

(କ) ଗର୍ଭସ୍ଥ ଶିଶୁର ମଂଗଳ କାମନା କରି ସ୍ତ୍ରୀମାନେ ଷଷ୍ଠୀ ଦେବୀଂକ ଉଦ୍ଦେଶ୍ୟରେ ବ୍ରତ ଉପବାସ କରଂତି।

(ଖ) ଏହି ଦିନ କୃଷକମାନେ 'ଗର୍ଭଣା' ନାମକ ଗଛରୁ ଡାଳ ଆଣି ତାକୁ ବିଧିବଦ୍ଧ ଭାବରେ ପୂଜା କରି ଧାନକ୍ଷେତରେ ପୋତି ଦେଇଆସଂତି।

(ଗ) 'ଗର୍ଭଣା ସଂକ୍ରାନ୍ତି' ତୁଳା ସଂକ୍ରାନ୍ତି ହୋଇଥିବାରୁ ଏହି ଦିନ ତୁଳାରାଶିସ୍ଥିତ 'ସ୍ୱାତୀ' ନକ୍ଷତ୍ରର ପୂଜା କରାଯାଏ।

ପ୍ରଶ୍ନ-୪ : ନିମ୍ନଲିଖିତ ପର୍ବଗୁଡ଼ିକ କେଉଁ ମାସ କେଉଁ ତିଥିରେ ପାଳିତ ହୁଏ ?

(କ) ଅଶୋକାଷ୍ଟମୀ
(ଖ) ଚଂଦ୍ରଭାଗା ବ୍ରତ
(ଗ) ଶୀତଳଷଷ୍ଠୀ
(ଘ) ଦୀପାବଳି
(ଙ) ଅଗିଜଳା ପର୍ବ ବା ଅଗ୍ନିଉତ୍ସବ ପୂର୍ଣ୍ଣିମା
(ଚ) ସରସ୍ୱତୀ ପୂଜା
(ଛ) ଅଁଳା ନବମୀ

ପ୍ରଶ୍ନ-୫ : ନିମ୍ନଲିଖିତ ରୀତି/ପ୍ରଥାଗୁଡ଼ିକ କେଉଁ ପର୍ବ/ଯାତ୍ରା/ଓଷା ସହ ସଂପୃକ୍ତ ?

(କ) ମୁଂଡରେ ଘଟ ଧରି ଗଡ଼ ନିଆଁରେ ଚାଲିବା
(ଖ) ହଳ ଚଳାଇବା ନିଷେଧ ଓ ଦୋଳିଖେଳ
(ଗ) ଶିବପାର୍ବତୀ ବିବାହ ଓ ବରକନ୍ୟା ବିଦାୟ
(ଘ) ନୂଆ ଅମଳ ହୋଇଥିବା ଫସଲ (ଧାନ)
ରାଂଧି ପରିବାରବର୍ଗଂକ ସହ ଏକତ୍ର ଭୋଜନ

ପ୍ରଶ୍ନ-୬ : ଆମ ରାଜ୍ୟରେ ସବୁ କଳକାରଖାନା ଓ ଶିଳ୍ପାନୁଷ୍ଠାନରେ ବିଶ୍ୱକର୍ମା ପୂଜା ମହା ସମାରୋହରେ ପାଳିତ ହୁଏ। ମାତ୍ର ତିଥି ଅନୁସାରେ ଦେଖିଲେ ଏହି ପୂଜା କେବେ ଗଣେଶ ପୂଜାର ଦୁଇ ତିନିଦିନ ଆଗରୁ ପଡ଼େ ତ ଆଉ କେବେ ଗଣେଶ ପୂଜା ପରେ ପଡ଼େ। ଏପରି କାହିଁକି ହୁଏ ?

(କ) କାରଣ ପୁରୀର ମୁକ୍ତିମଂଡପ ପଂଡିତ ସଭା ପ୍ରତିବର୍ଷ ବିଶ୍ୱକର୍ମା ପୂଜା ପାଇଁ ଅଲଗା ଦିନ/ତିଥି ନିର୍ଧାରଣ କରଂତି।

(ଖ) କାରଣ ସୌରଗଣନା ଅନୁସାରେ ଆଶ୍ୱିନ ଅର୍ଥାତ୍ କନ୍ୟାମାସର ସଂକ୍ରାଂତି ଦିନ ବିଶ୍ୱକର୍ମା ପୂଜା ପାଳିତ ହୁଏ । ଗଣେଶ ପୂଜା ଆଦି ପର୍ବ ଚାଂଦ୍ରଗଣନା ଅନୁସାରେ ନିର୍ଦ୍ଦିଷ୍ଟ ତିଥିରେ ପଡ଼େ ।

(ଗ) ପ୍ରଚଳିତ ଭିନ୍ନ ଭିନ୍ନ ପଂଜିକା ଗଣନା ଅନୁସାରେ ପ୍ରତିବର୍ଷ ବିଶ୍ୱକର୍ମା ପୂଜା ଭିନ୍ନ ଭିନ୍ନ ତିଥିରେ ପଡ଼େ ।

**ପ୍ରଶ୍ନ-୭ :** ଓଡ଼ିଶାରେ ସର୍ପପୂଜାର ପରଂପରା ଅତି ପ୍ରାଚୀନ । ରାଜ୍ୟର ବିଭିନ୍ନ ସ୍ଥାନରେ ନାଗକନ୍ୟା, ନାଗବଂଧ, ଅର୍ଦ୍ଧନାଗ ଓ ଅର୍ଦ୍ଧମନୁଷ୍ୟାକୃତି କେତୁଗ୍ରହଂକ ମୂର୍ତି ତଥା ସର୍ପଫଣାଯୁକ୍ତ ବଳରାମଂକ ବିଗ୍ରହ ଦେଖିବାକୁ ମିଳେ । ତେବେ ଓଡ଼ିଶାର ପୁରପଲ୍ଲୀରେ ନାଗପୂଜା ଉଦ୍ଦେଶ୍ୟରେ ଏକ ବ୍ରତ ପାଳିତ ହୁଏ । ଏହି ବ୍ରତର ବିଧି ଅନୁସାରେ ଉଈମାଟି ଖଂଡିଏ ଆଣି ତାକୁ ସିଂହୂର, କଜ୍ୱଳ, ଗଂଧ, ପୁଷ୍ପ ଦେଇ ଚାଂଗୁଡ଼ିରେ ନାଗନାଗୁଣୀଂକ ପିତୁଳା ସ୍ଥାପନା କରି ପୂଜା କରାଯାଏ । ଏହି ବ୍ରତ କେଉଁ ଦିନ ପାଳିତ ହୁଏ ?

(କ) କାର୍ତିକ ଶୁକ୍ଳ ଚତୁର୍ଥୀ
(ଖ) ଶ୍ରାବଣ ଶୁକ୍ଳ ପଂଚମୀ
(ଗ) ଶ୍ରାବଣ ପୂର୍ଣିମା

**ପ୍ରଶ୍ନ-୮ :** ଓଡ଼ିଆ ରାଜାମାନଂକର ରାଜତ୍ୱର ଅଂକ ଗଣନାର ପ୍ରଥମ ଦିନକୁ ଓଡ଼ିଶାରେ ପାରଂପରିକ ଭାବରେ ନବବର୍ଷ ରୂପେ ପାଳନ କରାଯାଏ । ଏହି ପର୍ବରେ ଜମିଦାରମାନେ ସୁନାମୋହରରେ ଅଂକ କଟାଇବାର ପରଂପରା ମଧ୍ୟ ରହିଛି । ଏହି ପର୍ବର ନାମ କ'ଣ ?

(କ) ବିଷୁବ ସଂକ୍ରାଂତି
(ଖ) ବୈଶାଖି
(ଗ) ସୁନିଆ

**ପ୍ରଶ୍ନ-୯ :** ମେଷ, ବୃଷ, ମିଥୁନ, କର୍କଟ ଭଳି ୧୨ଟି ରାଶି ମଧ୍ୟରୁ ସୂର୍ଯଂକର ବିଭିନ୍ନ ରାଶିରେ ଅବସ୍ଥାନ ଅନୁଯାୟୀ ବର୍ଷରେ ୧୨ଟି ସଂକ୍ରାଂତି ହୁଏ । ଏଥି ମଧ୍ୟରୁ କେଉଁ ସଂକ୍ରାଂତିକୁ ରଜସଂକ୍ରାଂତି ରୂପେ ପାଳନ କରାଯାଏ ?

(କ) ବୃଷ
(ଖ) ମେଷ
(ଗ) ମିଥୁନ

**ପ୍ରଶ୍ନ-୧୦ :** ବରଗଡ଼ ସହରରେ ପାଳିତ ହେଉଥିବା ପ୍ରସିଦ୍ଧ ଧନୁଯାତ୍ରାର ଏକ ବିଶେଷତ୍ୱ ଯେ, ସମଗ୍ର ସହର, ପାର୍ଶ୍ୱବର୍ତୀ ନଦୀ ଓ ଗ୍ରାମ ସମୂହ ଏହି ଯାତ୍ରାରେ ସର୍ବତୋ ଭାବରେ

ସାମିଲ ହୁଅଂତି । ବରଗଡ଼ ପାଲଟିଯାଏ 'ମଥୁରା' । ପାଖରେ ବହିଯାଇଥିବା ଜିରା ନଦୀ ହୁଏ 'ଯମୁନା ନଈ' ଓ ନଦୀ ଆର କୂଳର ଅମାପଲି ଗାଁ ହୁଏ 'ଗୋପପୁର' । ତେବେ ଏହି ଯାତ୍ରାଟି ବର୍ଷର କେଉଁ ସମୟରେ ପାଳିତ ହୁଏ ?

(କ) ଜନ୍ମାଷ୍ଟମୀ ଠାରୁ ୧୧ ଦିନ
(ଖ) ପୌଷ ଶୁକ୍ଳ ଚତୁର୍ଥୀଠାରୁ ପୂର୍ଣ୍ଣମୀ ପର୍ଯ୍ୟଂତ
(ଗ) ଦୋଳପୂର୍ଣ୍ଣିମା ଠାରୁ ୯ ଦିନ

**ପ୍ରଶ୍ନ-୧୧ :** ନିମ୍ନରେ କିଛି ପିଠାପଣା ସହିତ କେତେକ ପୂଜା ପର୍ବର ନାମ ଦିଆଯାଇଛି । ସେମାନଂକୁ ମିଳାଇନିଅ ।

| | |
|---|---|
| (କ) ପୋଡ଼ପିଠା | (୧) ସାବିତ୍ରୀ ଅମାବାସ୍ୟା |
| (ଖ) ଚିତୋଉପିଠା | (୨) କାଂଜିଅଁଳା ଓଷା |
| (ଗ) ବୁଟଛତୁ ଓ ପଣା | (୩) ପ୍ରଥମାଷ୍ଟମୀ |
| (ଘ) ଧନୁମୁଆଁ | (୪) ରଜପର୍ବ |
| (ଙ) ମକର ଚାଉଳ | (୫) ଚିତାଲାଗି ଅମାବାସ୍ୟା |
| (ଚ) ଏଂଡୁରି ପିଠା | (୬) ଖୁଦୁରୁକୁଣି ଓଷା |
| (ଛ) ଧୁଆମୁଗ, ପାଚିଲା ଆଂବ, ପଣସ, ସପୁରୀ, ତାଳସଜ ଆଦି ଫଳମୂଳ | (୭) ସତ୍ୟନାରାୟଣ ପାଲା |
| (ଜ) ଖୁଦଭଜା ଓ ଖୁଦପିଠା | (୮) ଧନୁସଂକ୍ରାଂତି |
| (ଝ) ପାଚିଲା କଦଳୀ, ଘିଅ, ଅଟା କ୍ଷୀର, ଗୁଡ଼ରେ ତିଆରି ଶିରଣି | (୯) ବିଷୁବ ସଂକ୍ରାଂତି |
| (ଞ) ପିତା ଶୁଖୁଆ ଓ କାଂଜି | (୧୦) ମକର ସଂକ୍ରାଂତି |

**ପ୍ରଶ୍ନ-୧୨ :** ଚୈତ୍ର ମାସର ପୂର୍ଣ୍ଣିମାଠାରୁ ଆରଂଭ କରି ଆଠ ଦିନ ପର୍ଯ୍ୟଂତ ଓଡ଼ିଶାର ଉପକୂଳବର୍ତୀ ଅଂଚଳରେ 'ଚଇତିଘୋଡ଼ା' ନାଚ ଦେଖିବାକୁ ମିଳେ । ଏକ ନିର୍ଦ୍ଦିଷ୍ଟ ସଂପ୍ରଦାୟର ଲୋକେ ଏହି ପର୍ବ କାଳରେ ଅଶ୍ୱମୁଖୀ ବାସୁଳିଂକର ପୂଜା କରିବା ସଂଗେ ସଂଗେ ଚଇତିଘୋଡ଼ା ନାଚର ଆୟୋଜନ କରଂତି । ଏହି ନାଚ ସାଂଗରେ ବୋଲାଯାଉଥିବା ଗୀତଗୁଡ଼ିକ ମଧ୍ୟ ବେଶ୍ ଉପଭୋଗ୍ୟ । ତେବେ କେଉଁ ନିର୍ଦ୍ଦିଷ୍ଟ ସଂପ୍ରଦାୟର ଲୋକେ ଏହି ପର୍ବଟିକୁ ବିଶେଷ ଭାବରେ ପାଳନ କରଂତି ?

(କ) ରାଉତ
(ଖ) ଗୁଡ଼ିଆ
(ଗ) କେଉଟ

**ପ୍ରଶ୍ନ-୧୩ :** ଓଡ଼ିଶାର ଏକ ନିର୍ଦ୍ଦିଷ୍ଟ ସହରର ଅଧିଷ୍ଠାତ୍ରୀ ଦେବୀଙ୍କୁ 'ଡେରା' ନାମକ ଏକ ବୁଣାକାର ସଂପ୍ରଦାୟର କନ୍ୟା ରୂପେ କଳ୍ପନା କରାଯାଇଛି । ପ୍ରତି ଦୁଇ ବର୍ଷରେ ଥରେ ସେ ତାଂକ ବାପଘରକୁ ଆସଂତି ଏବଂ ଏହି ସମୟରେ ସାରା ସହରରେ ଏକ ବିରାଟ ଯାତ୍ରା ପାଳିତ ହୁଏ । ଏହି ସହର ଓ ଯାତ୍ରାଟିର ନାଁ କ'ଣ ?

(କ) ସଂବଲପୁର - ସମଲେଶ୍ୱରୀଂକ ଯାତ୍ରା

(ଖ) ବ୍ରହ୍ମପୁର - ଠାକୁରାଣୀ ଯାତ୍ରା

(ଗ) ଭବାନୀପାଟଣା - ମାଣିକେଶ୍ୱରୀଂକ ଛତ୍ରଯାତ୍ରା

**ପ୍ରଶ୍ନ-୧୪ :** ସାଧବ ପୁଅ ଓ ବୋଇତ ବଣିଜ କଥା ଓଡ଼ିଶାର ଘରେ ଘରେ ପ୍ରଚଳିତ । ସାଧବ ଘରର ସାତ ଭାଇଂକର ଅଲିଅଳ ଭଉଣୀ ତଅପୋଇର କାହାଣୀ ଏହି ଭଳି ଏକ ମର୍ମସ୍ପର୍ଶୀ ଉପାଖ୍ୟାନ ଯାହା କି ଏକ ନିର୍ଦ୍ଦିଷ୍ଟ ଓଷାରେ ପାଠ କରାଯାଏ । ଏହି ଓଷାଟି ଉପକୂଳବର୍ତୀ ଓଡ଼ିଶାର ପୁରପଲ୍ଲୀରେ ବହୁଳ ଭାବରେ ପାଳନ କରାଯାଏ । ଓଷାଟିର ନାଁ କ'ଣ ?

(କ) ଭାଇ ଜିଉଁତିଆ ଓଷା

(ଖ) ଜହ୍ନି ଓଷା

(ଗ) ଖୁଦୁରୁକୁଣି ଓଷା

**ପ୍ରଶ୍ନ-୧୫ :** ଏକ ନିର୍ଦ୍ଦିଷ୍ଟ ମାସ ପୂର୍ଣିମାର ପାଂଚ ସାତ ଦିନ ପୂର୍ବରୁ ଦଳକୁ ଦଳ କିଶୋର ବାଡ଼ି ଖଂଡେ ଧରି ଦୁଆର ଦୁଆର ବୁଲୁଥିବେ । ସମାନ ତାଳରେ ଭୂଇଁ ଉପରେ ସମସ୍ତଂକର ବାଡ଼ି ବାଜୁଥିବ 'ଠକ୍ ଠକ୍ ଠକ୍', ଗାଉଥିବେ ସେଇ ପର୍ବର ନିର୍ଦ୍ଦିଷ୍ଟ ଗୀତ । ଗୀତର ଭାବ ବା ଭାଷା ଯାହା ହେଉନା କାହିଁକି, 'ଛେର୍‌ଛେରା' ବୋଲି ଶବ୍ଦଟିଏ ବାରଂବାର ଉଚ୍ଚାରିତ ହେଉଥିବ । କହିବା ବାହୁଲ୍ୟ ଯେ, ପର୍ବଟିର ନାମ 'ଛେର୍‌ଛେରା' । ପଶ୍ଚିମ ଓଡ଼ିଶାର ଏହା କୃଷି ସଂବଂଧିତ ଏକ ସାମାଜିକ ପର୍ବ । ଏଥିରେ କୌଣସି ଦେବାଦେବୀ, ଓଷାବ୍ରତ ଉପାଖ୍ୟାନ ବା କାହାଣୀ ନାହିଁ । ଅଛି କେବଳ ଫସଲ ଆଦାୟ କାଳରେ ପିଠାପଣା ଓ ମଉଜମଜଲିସ୍‌ର ସ୍ଫୂର୍ତି ଓ ଆବେଗ । କେଉଁ ମାସର ପୂର୍ଣିମାରେ ଏହି ପର୍ବ ପାଳିତ ହୁଏ ?

(କ) ପୌଷ

(ଖ) ମାଘ

(ଗ) ଫାଲ୍‌ଗୁନ

## ପର୍ବପର୍ବାଣୀ / ଯାନିଯାତ୍ରା

## ଉତ୍ତରମାଳା

୧. (ଗ) ବିଷୁବ ସଂକ୍ରାନ୍ତି
୨. (କ) ଭାଦ୍ରବ
୩. (ଖ) ଗର୍ଭିଣୀ ଗଛରୁ ଡାଳ ଆଣି ପୂଜା କରି କ୍ଷେତରେ ପୋତି ଦିଆଯାଏ ।
୪. (କ) ଅଶୋକାଷ୍ଟମୀ : ଚୈତ୍ର ଶୁକ୍ଳ ଅଷ୍ଟମୀ
(ଖ) ଚନ୍ଦ୍ରଭାଗା ବୁଡ଼ : ମାଘ ଶୁକ୍ଳ ସପ୍ତମୀ
(ଗ) ଶୀତଳ ଷଷ୍ଠୀ : ଜ୍ୟେଷ୍ଠ ଶୁକ୍ଳ ଷଷ୍ଠୀ
(ଘ) ଦୀପାବଳି : କାର୍ତ୍ତିକ ଅମାବାସ୍ୟା
(ଙ) ଅଗିଜଳା ପର୍ବ : ମାଘ ପୂର୍ଣ୍ଣିମା
(ଚ) ସରସ୍ୱତୀ ପୂଜା : ମାଘ ଶୁକ୍ଳ ପଂଚମୀ
(ଛ) ଅଁଳା ନବମୀ : କାର୍ତ୍ତିକ ଶୁକ୍ଳ ନବମୀ
୫. (କ) ଝାମୁଯାତ୍ରା, (ଖ) ରଜ ପର୍ବ, (ଗ) ଶୀତଳଷଷ୍ଠୀ, (ଘ) ନୂଆଖାଇ
୬. (ଖ) ଆଶ୍ୱିନ ଅର୍ଥାତ୍ କନ୍ୟା ମାସର ସଂକ୍ରାନ୍ତି ଦିନ ବିଶ୍ୱକର୍ମା ପୂଜା ହୁଏ ।
୭. (କ) କାର୍ତ୍ତିକ ଶୁକ୍ଳ ଚତୁର୍ଥୀ
୮. (ଗ) ସୁନିଆ
୯. (ଗ) ମିଥୁନ
୧୦. (ଖ) ପୌଷ ଶୁକ୍ଳ ଚତୁର୍ଥୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ
୧୧. (କ) ପୋଡ଼ପିଠା : ରଜପର୍ବ
(ଖ) ଚିତୋଉ ପିଠା : ଚିତାଲାଗି ଅମାବାସ୍ୟା
(ଗ) ବୁଟଛତୁ ଓ ପଣା : ବିଷୁବ ସଂକ୍ରାନ୍ତି
(ଘ) ଧନୁମୁଆଁ : ଧନୁ ସଂକ୍ରାନ୍ତି
(ଙ) ମକର ଚାଉଳ : ମକର ସଂକ୍ରାନ୍ତି
(ଚ) ଏଂଡୁରି ପିଠା : ପ୍ରଥମାଷ୍ଟମୀ
(ଛ) ଧୁଆ ମୁଗ, ପାଚିଲା ଆଂବ ଆଦି ଫଳମୂଳ : ସାବିତ୍ରୀ ଅମାବାସ୍ୟା
(ଜ) ଖୁଦଭଜା ଓ ଖୁଦପିଠା : ଖୁଦୁରୁକୁଣି ଓଷା
(ଝ) ପାଚିଲା କଦଳୀ, ଘିଅ, ଅଟା, କ୍ଷୀର ଆଦିରେ ତିଆରି ଶିରଣି : ସତ୍ୟନାରାୟଣ ପାଲା
(ଞ) ପିତାଶୁଖୁଆ ଓ କାଂଜି : କାଂଜିଅଁଳା ଓଷା
୧୨. (ଗ) କେଉଟ
୧୩. (ଖ) ବ୍ରହ୍ମପୁର : ଠାକୁରାଣୀ ଯାତ୍ରା
୧୪. (ଗ) ଖୁଦୁରୁକୁଣି ଓଷା
୧୫. (କ) ପୌଷ

# ଓଡ଼ିଶାର ବରପୁତ୍ର

*"ତୁଁହେ ଗରବିତ ଜନମି ଉତ୍କଳେ ।*
*ଉତ୍କଳ ଜନନୀ ପୁଣି ଗରବିଣୀ,*
*ତୁମ୍ଭ ପରି ସୁତ ଲଭି ନିଜ କୋଳେ ।"*

\- କାଂତକବି ଲକ୍ଷ୍ମୀକାଂତ ମହାପାତ୍ର

ଅଗମ୍ୟ ବଣ ଜଂଗଲ ଓ ଆଦିବାସୀ ଅଧ୍ୟୁଷିତ ଓଡ଼ିଶା ପ୍ରଦେଶ ବହୁଦିନ ଧରି ରାଜାରାଜୁଡ଼ା ଶାସନ ଓ ବିଦେଶୀମାନଂକ ଅକ୍ତିଆରରେ ଥିଲା । ଏହି ରାଜ୍ୟର ସର୍ବାଂଗୀନ ବିକାଶ କରି ଓଡ଼ିଶାର ନିଜସ୍ୱ ପରିଚୟ ଓ ସ୍ୱାଭିମାନ ପ୍ରତିଷ୍ଠା କରିବା ପାଇଁ ଯେଉଁମାନେ ଜୀବନ ଉତ୍ସର୍ଗ କରିଯାଇଛଂତି, ସେମାନଂକର ନାମ ଆଜି ପ୍ରତ୍ୟେକ ଓଡ଼ିଆ ପାଇଁ ପ୍ରାତଃସ୍ମରଣୀୟ । ଏବେ ସେମାନଂକର ଜୀବନ ଓ ସାଧନାରୁ ପ୍ରେରଣା ସଂଗ୍ରହ କରି ଓଡ଼ିଶାକୁ ଆହୁରି ଆଗେଇ ନେବା ପାଇଁ ସଂକଳ୍ପ କରିବାର ସମୟ ଆସିଛି ।

**ପ୍ରଶ୍ନ-୧ :** ନିମ୍ନରେ ଓଡ଼ିଶାର କେତେଜଣ ବରପୁତ୍ରଂକ ନାମ ସହିତ ସେମାନଂକୁ ଯେଉଁ ଉପାଧିରେ ଭୂଷିତ କରାଯାଇଛି, ତାହା ଦିଆଯାଇଛି । ସେଗୁଡ଼ିକୁ ମିଳାଇ ନିଅ ।

| | | | |
|---|---|---|---|
| (କ) | ହରେକୃଷ୍ଣ ମହତାବ | (୧) | ଉତ୍କଳଗୌରବ |
| (ଖ) | ଶାରଳା ଦାସ | (୨) | ଅତିବଡ଼ୀ |
| (ଗ) | ଗୋପବଂଧୁ ଦାସ | (୩) | କର୍ମବୀର |
| (ଘ) | ମଧୁସୂଦନ ଦାସ | (୪) | ଉତ୍କଳଭାରତୀ |
| (ଙ) | ଜଗନ୍ନାଥ ଦାସ | (୫) | ଉତ୍କଳକେଶରୀ |
| (ଚ) | କୁଂତଳା କୁମାରୀ ସାବତ | (୬) | ଶୂଦ୍ରମୁନି |
| (ଛ) | ଗୌରୀଶଂକର ରାୟ | (୭) | ଉତ୍କଳମଣି |

**ପ୍ରଶ୍ନ-୨ :** ନିମ୍ନରେ ଦିଆଯାଇଥିବା ଓଡ଼ିଶାର ବରପୁତ୍ରମାନଂକ ନାଁ ସହ ଠିକ୍ ସାଂଗିଆଟି ମିଶାଇନିଅ ।

| | | | |
|---|---|---|---|
| (କ) | ନଂଦ କିଶୋର | (୧) | ରାଓ |
| (ଖ) | ଫକୀରମୋହନ | (୨) | ପରିଜା |
| (ଗ) | ପ୍ରାଣକୃଷ୍ଣ | (୩) | ନାୟକ |
| (ଘ) | ନିମାଇଁ | (୪) | ରଥ |
| (ଙ) | ଅଭିମନ୍ୟୁ | (୫) | ବଳ |
| (ଚ) | ବଳଦେବ | (୬) | ଚୌଧୁରୀ |

ଆମ ଓଡ଼ିଶା

# ଆମ ଓଡ଼ିଶା କୁଇଜ୍

## ଆବେଦନ ପତ୍ର

ନାମ

ଜନ୍ମ ତାରିଖ ଜନ୍ମ ସ୍ଥାନ

ବାପାଙ୍କ ନାମ

ମାଆଙ୍କ ନାମ

ଶ୍ରେଣୀ

ଶିକ୍ଷାନୁଷ୍ଠାନ

ସଂପୂର୍ଣ୍ଣ ଠିକଣା

ପିନ୍

ବ୍ଲକ୍ ଜିଲ୍ଲା

ମୁଁ 'ଆମ ଓଡ଼ିଶା କୁଇଜ୍' ପରୀକ୍ଷାରେ ଜଣେ ପରୀକ୍ଷାର୍ଥୀ ରୂପେ ଅଂଶଗ୍ରହଣ କରିବାକୁ ଆଗ୍ରହୀ। ପରୀକ୍ଷାର ନିୟମାବଳି ମୁଁ ପାଳନ କରିବି।

ଅଧ୍ୟକ୍ଷ / ପ୍ରଧାନ ଶିକ୍ଷକଙ୍କ ସ୍ୱାକ୍ଷର ଆବେଦକଙ୍କ ସ୍ୱାକ୍ଷର

# ନିମ୍ନଲିଖିତ ତଥ୍ୟର ସଂକ୍ଷିପ୍ତ ବିବରଣୀ ଦିଅଂତୁ

- ❑ କେଉଁ ଖବରକାଗଜ ଘରକୁ ମଗାଂତି ?
- ❑ କେଉଁ ପତ୍ରିକା ନିୟମିତ ଭାବେ ପଢ଼ଂତି ?
- ❑ ଦିନକୁ କେତେ ଘଂଟା ଟିଭି ଦେଖଂତି ?
- ❑ ଆପଣଂକ ଘରେ ନିମ୍ନୋକ୍ତ ବହି ଅଛି କି ?

| | | | | | | | | |
|---|---|---|---|---|---|---|---|---|
| ଓଡ଼ିଆ ଅଭିଧାନ | ହଁ | | ନା | | ଜ୍ଞାନକୋଷ | ହଁ | | ନା |
| ଓଡ଼ିଆ ପଂଜିକା | ହଁ | | ନା | | ଭାଗବତ | ହଁ | | ନା |

- ❑ ଆପଣଂକ ପ୍ରିୟ ଖାଦ୍ୟ କଅଣ ?
- ❑ ବହି ପତ୍ର କିଣିବାରେ ବର୍ଷକୁ ଆନୁମାନିକ କେତେ ଖର୍ଚ୍ଚ କରଂତି ?
- ❑ ସ୍ୱାସ୍ଥ୍ୟରକ୍ଷା ପାଇଁ ନିୟମିତ ଭାବେ କ'ଣ କରଂତି ?

# ପ୍ରବେଶ ପତ୍ର

(ଏହି ପତ୍ର ଦେଖାଇ ପରୀକ୍ଷା କେଂଦ୍ରରେ ପରୀକ୍ଷା ଦେବେ)

**ନିଜେ ଲେଖଂତୁ**

| | |
|---|---|
| ନାମ | |
| ଶିକ୍ଷାନୁଷ୍ଠାନ | |
| ଜିଲ୍ଲା | |

ଆବେଦକଂକ ସ୍ୱାକ୍ଷର

**କାର୍ଯାଳୟ ବ୍ୟବହାର ପାଇଁ**

| | |
|---|---|
| କ୍ରମାଂକ | |

(ଏହି କ୍ରମାଂକ ପ୍ରଶ୍ନୋତ୍ତର ପତ୍ରରେ ଲେଖିବେ)

| | |
|---|---|
| ପରୀକ୍ଷା କେଂଦ୍ର | |
| ପରୀକ୍ଷା ଦିବସ | ୬ ଡିସେଂବର ୧୯୯ |

ଅଧ୍ୟକ୍ଷ, 'ଆମ ଓଡ଼ିଶା'

# ନିୟମାବଳି

- ସାଂଗରେ କେବଳ କଲମ ନେଇ ପରୀକ୍ଷା ଆରଂଭ ହେବାର ଅଧଘଂଟା ପୂର୍ବରୁ ପରୀକ୍ଷା କେଂଦ୍ରରେ ପହଂଚିବେ ।
- ପରୀକ୍ଷା ସମୟରେ ସଂପୂର୍ଣ ନିରବତା ପାଳନ କରିବେ ।
- ମାତ୍ର ଏକ ଘଂଟା ପାଇଁ ପରୀକ୍ଷା ହେବ । ଏଣୁ ଏହି ସମୟ ମଧ୍ୟରେ କେଂନ୍ଦ୍ର ବାହାରକୁ ଯିବା ପାଇଁ ଅନୁମତି ମାଗିବେ ନାହିଁ ।
- ଯେଉଁଠାରେ ଆବଶ୍ୟକ, ପରିଷ୍କାର ଗୋଲ ଗୋଲ ଅକ୍ଷର ଲେଖିବେ ।
- ପରୀକ୍ଷାର ଉପସ୍ଥିତି ପତ୍ରରେ ନିଜେ ସ୍ୱାକ୍ଷର କରିବେ ଏବଂ ପ୍ରଶ୍ନ-ଉତର ପତ୍ରରେ ନିରୀକ୍ଷକଂକ ସ୍ୱାକ୍ଷର କରାଇବେ ।
- ପରୀକ୍ଷା ସମୟରେ କାହାରି ସାହାଯ୍ୟ ନେବେ ନାହିଁ କି କାହାକୁ ସାହାଯ୍ୟ ଦେବେ ନାହିଁ ।

| | |
|---|---|
| (ଛ) ନବକୃଷ୍ଣ | (୭) ସେନାପତି |
| (ଜ) ବିର୍ସା | (୮) ହରିଚଂଦନ |
| (ଝ) ଲକ୍ଷ୍ମଣ | (୯) ସାମଂତସିଂହାର |
| (ଞ) ଅଭିନ୍ନ ଚଂଦ୍ର | (୧୦) ମୁଂଡା |

ପ୍ରଶ୍ନ-୩ : ଆଧୁନିକ ଓଡ଼ିଆ ସାହିତ୍ୟର ଜନକ ଫକୀର ମୋହନ ତାଂକର ଆତ୍ମଜୀବନୀରେ ସୂଚନା ଦେଇଛଂତି ଯେ, ତାଂକର ନାମ ମୂଳରୁ ଫକୀର ମୋହନ ନ ଥିଲା । ପିଲାଦିନରୁ ବହୁ ଦୁରାରୋଗ୍ୟ ବ୍ୟାଧିରେ ପୀଡ଼ିତ ଥିବାରୁ ତାଂକର ଜେଜେମା କୁଚିଳା ଦେଈ ସେତେବେଳେ ବାଲେଶ୍ୱରଠାରେ ଥିବା ମୁସଲମାନ ପୀରଂକ ପାଖରେ ଏକ ମାନସିକ କରିଥିଲେ ଯେ, ତାଂକର ନାତି ଭଲ ହୋଇଗଲେ ସେ ତାଙ୍କୁ ଫକୀର ବେଶରେ ସଜାଇ ପୀରଂକୁ ପୂଜା କରିବେ । ସେହି ମାନସିକ ଅନୁସାରେ ତାଂକର ମୂଳନାମ ପରିବର୍ତ୍ତିତ ହୋଇ 'ଫକୀର ମୋହନ' ହୋଇଗଲା । ତେବେ ଫକୀର ମୋହନଂକ ମୂଳନାମ କ'ଣ ଥିଲା ?

(କ) ବ୍ରଜମୋହନ
(ଖ) ଲକ୍ଷ୍ମଣ ଚରଣ
(ଗ) ପୁରୁଷୋତ୍ତମ

ପ୍ରଶ୍ନ-୪ : ଗଂଜାମ ଜିଲ୍ଲାର ବ୍ରହ୍ମପୁର ନିକଟବର୍ତ୍ତୀ ଏକ ହରିଜନ ବସ୍ତିରେ ଏହି ମହାପୁରୁଷଙ୍କ ଜନ୍ମ । ଗାଂଧିଜୀଂକ ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ଜୀବନସାରା କୁସଂସ୍କାର, ଅଂଧବିଶ୍ୱାସ ଓ ଅସ୍ପୃଶ୍ୟତା ବିରୋଧରେ ସଂଗ୍ରାମ କରି ଆସିଥିଲେ । ଦୀର୍ଘଦିନ ଧରି ସେ 'ସେବକ' ପତ୍ରିକାର ସଂପାଦନା ମଧ୍ୟ କରୁଥିଲେ । ରାଜନୀତି, ସମାଜ ସଂସ୍କାର ଓ ସଂଗଠନ କ୍ଷେତ୍ରରେ ତାଂକର ଉଲ୍ଲେଖଯୋଗ୍ୟ ଅବଦାନ ଲାଗି ୧୯୬୯ ମସିହା ଜାନୁଆରି ୨୬ ତାରିଖରେ ଭାରତ ସରକାର ତାଂକୁ ପଦ୍ମଶ୍ରୀ ଉପାଧିରେ ସମ୍ମାନିତ କରିଥିଲେ । ତାଂକର ନାମ କ'ଣ ?

(କ) ବୃଂଦାବନ ନାୟକ
(ଖ) ମୋହନ ନାୟକ
(ଗ) ଲକ୍ଷ୍ମଣ ନାୟକ

ପ୍ରଶ୍ନ-୫ : ଓଡ଼ିଶା ପାଇଁ ଏକ ଗୌରବର ବିଷୟ ଯେ, ନେତାଜୀ ସୁଭାଷ ବୋଷ କଟକ ସହରର ଓଡ଼ିଆ ବଜାରଠାରେ ୧୮୯୭ ମସିହା ଜାନୁଆରି ୨୩ ତାରିଖରେ ଜନ୍ମଗ୍ରହଣ କରିଥିଲେ । ତାଂକର ଶୈଶବ ଓ ସ୍କୁଲ ଜୀବନ କଟକରେ ହିଁ କଟିଥିଲା । ଶ୍ରୀ ଗିରିଜା ମୁଖାର୍ଜୀ ତାଂକଦ୍ୱାରା ରଚିତ ନେତାଜୀଂକ ଜୀବନୀ ପୁସ୍ତକରେ ଉଲ୍ଲେଖ କରିଛଂତି ଯେ, କଟକର ରେଭେନ୍‌ସା କଲେଜିଏଟ୍ ସ୍କୁଲ୍‌ରେ ପଢୁଥିବା ସମୟରେ ନେତାଜୀ ଏହି ସ୍କୁଲ୍‌ର ପ୍ରଧାନ ଶିକ୍ଷକଂକ ଦ୍ୱାରା ଗଭୀର ଭାବରେ ପ୍ରଭାବିତ ହୋଇଥିଲେ । ଏପରି କି ବର୍ଲିନ୍ ଯୁଦ୍ଧ ସମୟରେ ମଧ୍ୟ ନେତାଜୀ ଏହି ଶିକ୍ଷକଂକୁ ମନେ ପକାଉଥିଲେ ଏବଂ

ନିଜ ଜୀବନରେ ତାଂକର ଅବଦାନ ସଂପର୍କରେ ସ୍ମୃତିଚାରଣ କରୁଥିଲେ । ଏହି ଶିକ୍ଷକଂକର ନାମ କ'ଣ ?

(କ) ବେଣୀମାଧବ ଦାସ
(ଖ) ନାରାୟଣ ପତି
(ଗ) ଜାନକୀନାଥ ବୋଷ

ପ୍ରଶ୍ନ-୬ : ଓଡ଼ିଶାରେ ଜ୍ୟୋତିଷୀ ଗଣନାର ମୂଳ ପ୍ରାମାଣିକ ଗ୍ରଂଥ ହେଲା 'ସିଦ୍ଧାଂତ ଦର୍ପଣ' । ଏହି ଗ୍ରଂଥର ପ୍ରବର୍ତକ ସାମଂତ ଚଂଦ୍ରଶେଖର ଓଡ଼ିଶାର ଏକ ଦୁର୍ଗମ ଗଡ଼ଜାତରେ ଜନ୍ମଗ୍ରହଣ କରିଥିଲେ । କୌଣସି ଆଧୁନିକ ବୈଜ୍ଞାନିକ ଉପକରଣର ସାହାଯ୍ୟ ନ ନେଇ ସେ ଯେଉଁ ଗଣନା କରିଯାଇଛଂତି, ତାହା ସଂପୂର୍ଣ ନିର୍ଭୁଲ୍ ପ୍ରମାଣିତ ହୋଇଛି । ତେବେ ସେ ଯେଉଁ ଗଡ଼ଜାତରେ ଜନ୍ମଗ୍ରହଣ କରିଥିଲେ, ତାହାର ନାଁ କ'ଣ ?

(କ) ଦଶପଲ୍ଲା
(ଖ) ଢେଂକାନାଳ
(ଗ) ଖଂଡପଡ଼ା

ପ୍ରଶ୍ନ-୭ : ଓଡ଼ିଶାରେ ଏକ ନିର୍ଦ୍ଦିଷ୍ଟ ଚିକିତ୍ସା ପଦ୍ଧତିର ପ୍ରବର୍ତନ ଓ ପ୍ରସାର କ୍ଷେତ୍ରରେ ତାଂକର ଭୂମିକା ଅତ୍ୟଂତ ଗୁରୁତ୍ୱପୂର୍ଣ । ସେ ଭାରତର ତିନି ଜଣ ପୂର୍ବତନ ରାଷ୍ଟ୍ରପତିଂକର ବ୍ୟକ୍ତିଗତ ଚିକିତ୍ସକ ଥିଲେ ଏବଂ ୧୯୬୮ ମସିହାରେ ଚିକିତ୍ସା କ୍ଷେତ୍ରରେ ତାଂକର ଅବଦାନ ଲାଗି ଭାରତ ସରକାରଂକ ଦ୍ୱାରା ପଦ୍ମଶ୍ରୀ ଉପାଧିରେ ଭୂଷିତ ହୋଇଥିଲେ । ସାଧାରଣ ଜନତାଂକ ଦୈନଂଦିନ ଉପକାରରେ ଆସିବା ଭଳି ଏହି ଚିକିତ୍ସା ପଦ୍ଧତି ସଂବଳିତ ଅନେକଗୁଡ଼ିଏ ପୁସ୍ତକ ସେ ରଚନା କରିଯାଇଛଂତି । ତାଂକର ନାଁ କ'ଣ ?

(କ) କବିରାଜ ଲକ୍ଷ୍ମଣ ମିଶ୍ର
(ଖ) ଡାକ୍ତର ଅଭିନ୍ନ ଚଂଦ୍ର ରାଓ
(ଗ) ଡାକ୍ତର ଆଇଜାକ୍ ସାଂତ୍ରା

ପ୍ରଶ୍ନ-୮ : କବିସୂର୍ଯଂକର ଜୀବନକାଳ ସଂପର୍କରେ ଯଥେଷ୍ଟ ପ୍ରାମାଣିକ ତଥ୍ୟ ମିଳିନାହିଁ । ତଥାପି ସେ ପ୍ରାୟ ୧୭୭୯ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ ବୋଲି ଗ୍ରହଣ କରାଯାଏ । ରାଜା ପୁରୁଷୋତ୍ତମ ଅନଂଗଭୀମ ଦେବଂକ ଦରବାରରେ ଅନ୍ୟତମ ପଂଡିତ ଉଜ୍ଜ୍ୱଳ ରଥ ତାଂକର ପିତା ଏବଂ ସେ ସମୟର ପ୍ରଖ୍ୟାତ ତାଂତ୍ରିକ ତ୍ରିପୁରାରି ଓତା ତାଂକର ଅଜା । ତେବେ କବିସୂର୍ଯ ବଳଦେବଂକର ଜନ୍ମସ୍ଥାନ କେଉଁଠି, ଅର୍ଥାତ୍ ସେ କେଉଁ ଜିଲ୍ଲାରେ ଜନ୍ମଗ୍ରହଣ କରିଥିଲେ ?

(କ) ସଂବଲପୁର
(ଖ) ଗଂଜାମ
(ଗ) ପୁରୀ

**ପ୍ରଶ୍ନ-୯ :** ଓଡ଼ିଶାର ଆଦିକବି ଶାରଳା ଦାସଂକ ପ୍ରକୃତ ନାମ ଶାରଳା ଦାସ ନ ଥିଲା । ଦେବୀ ଶାରଳାଂକ କୃପାରୁ ସିଦ୍ଧିଲାଭ କରିଥିବାରୁ ସେ ଶାରଳା ଦାସ ନାମରେ ପରିଚିତ ହୋଇଥିଲେ । ତାଂକର ଅସଲ ନାମ କ'ଣ ଥିଲା ?

(କ) ଅଚ୍ୟୁତ
(ଖ) ସିଦ୍ଧେଶ୍ୱର
(ଗ) ନିମାଈ

**ପ୍ରଶ୍ନ-୧୦ :** କଟକ ସହରରେ 'ଭାଷାକୋଷ ଲେନ୍' ବୋଲି ଗୋଟିଏ ଗଳି ଅଛି । ଏହିଠାରେ ବାସ କରୁଥିବା ଜଣେ ଖ୍ୟାତନାମା ଓକିଲ ସେତେବେଳର କଟକ ଟ୍ରେନିଂ କଲେଜର ଅଧ୍ୟକ୍ଷ ହେଂତରସେନ୍‌ଂକ ଅନୁରୋଧ କ୍ରମେ ଓଡ଼ିଆ ଭାଷାରେ ଏକ ପୂର୍ଣାଂଗ ଭାଷାକୋଷ ପ୍ରଣୟନ କରିଥିଲେ । ମୟୂରଭଂଜର ମହାରାଜା ପୂର୍ଣଚଂଦ୍ରଂକ ନାମରେ ଏହି ଭାଷାକୋଷଟି ନାମିତ ହୋଇଥିଲା । ଏହାର ପ୍ରଣେତାଂକ ନାଁ କ'ଣ ?

(କ) ପଂଡିତ ଗୋପୀନାଥ ନଂଦ
(ଖ) ମୋହନ ପ୍ରସାଦ ଠାକୁର
(ଗ) ଗୋପାଳଚଂଦ୍ର ପ୍ରହରାଜ

**ପ୍ରଶ୍ନ-୧୧ :** ନିମ୍ନରେ କେତୋଟି ଗାଁର ନାମ ସହ, ସେଠାରେ ଜନ୍ମ ନେଇଥିବା କେତେଜଣ ମହାପୁରୁଷଂକ ନାମ ଦିଆଯାଇଛି । ସେ ସବୁକୁ ମିଳାଇନିଅ ।

| | | | |
|---|---|---|---|
| (କ) | ମଲ୍ଲୀକାଶପୁର | (୧) | ଲକ୍ଷ୍ମଣ ନାୟକ |
| (ଖ) | ସୁଆଂଡୋ | (୨) | ବୀର ସୁରେଂଦ୍ର ସାଏ |
| (ଗ) | ତେଂତୁଳିଆ | (୩) | ମଧୁସୂଦନ ଦାସ |
| (ଘ) | ପାରଳାଖେମୁଂଡି | (୪) | ଫକୀର ମୋହନ ସେନାପତି |
| (ଙ) | ବାମଂଡା | (୫) | ଗୋପବଂଧୁ ଦାସ |
| (ଚ) | ସତ୍ୟଭାମାପୁର | (୬) | କୃଷ୍ଣଚଂଦ୍ର ଗଜପତି ନାରାୟଣ ଦେବ |
| (ଛ) | ଖିଂଡା | (୭) | ସାର୍ ବାସୁଦେବ ସୁଢ଼ଳଦେବ |

**ପ୍ରଶ୍ନ-୧୨ :** ନିମ୍ନରେ ଦିଆଯାଇଥିବା ପିତା ବା ପିତାମାତାଂକ ନାମ ସହ ସେମାନଂକର ସୁଯୋଗ୍ୟ ସଂତାନଂକର ନାମ ମିଳାଇନିଅ ।

| | | | |
|---|---|---|---|
| (କ) | ଦୈତ୍ୟାରି ଦାଶ ଓ ସ୍ୱର୍ଣମୟୀ ଦେବୀ | (୧) | ରମାଦେବୀ |
| (ଖ) | ସୁଂଦର ନାରାୟଣ ରାୟ ଓ ତାରିଣୀ ଦେବୀ | (୨) | ଫକୀରମୋହନ |
| (ଗ) | ବିଶ୍ୱନାଥ ପରିଜା ଓ ଜୟଂତୀ ଦେବୀ | (୩) | ସୁଭାଷ ଚଂଦ୍ର |
| (ଘ) | ଗୋପାଳବଲ୍ଲଭ ଦାସ | (୪) | ଲକ୍ଷ୍ମଣ |
| (ଙ) | ଲକ୍ଷ୍ମଣ ଚରଣ ସେନାପତି | (୫) | ଗୋପବଂଧୁ |

(ଚ) ଜାନକୀନାଥ ବୋଷ (ଠ) ରାଧାନାଥ
(ଜ) ପଦ୍ମନାଭ ନାୟକ (ଡ) ପ୍ରାଣକୃଷ୍ଣ

**ପ୍ରଶ୍ନ-୧୩ :** ଓଡ଼ିଶାର ଜଣେ ପୂର୍ବତନ ମୁଖ୍ୟମଂତ୍ରୀ ପଂଡିତ ଜବାହରଲାଲ ନେହେରୁଂକର ସମବୟସ୍କ ଥିଲେ। ୧୯୮୯ ମସିହାରେ ସାରା ଦେଶରେ ଜବାହରଲାଲ ଜନ୍ମ ଶତବାର୍ଷିକୀ ଉତ୍ସବ ମହାସମାରୋହରେ ପାଳିତ ହେଉଥିବା ସମୟରେ ଓଡ଼ିଶାବାସୀ ସରଳ, ନିରାଡ଼ଂବର ରୀତିରେ ଏହି ଜନନାୟକଂକର ଜନ୍ମ ଶତବାର୍ଷିକୀ ପାଳନ କରିଥିଲେ। ଏହି ନେତାଂକର ନାଁ କ'ଣ ?

(କ) ଡକ୍ଟର୍ ହରେକୃଷ୍ଣ ମହତାବ
(ଖ) ବିଶ୍ୱନାଥ ଦାସ
(ଗ) ନବକୃଷ୍ଣ ଚୌଧୁରୀ

**ପ୍ରଶ୍ନ-୧୪ :** ଜନ୍ମ ତାଂକର ବଂଗଳାରେ। ନାଁ ହେଲା ମିନୁ ସେନ୍। ୧୯୨୭ ମସିହାରେ ଶାଂତିନିକେତନରେ ପଢୁଥିବା ସମୟରେ ସେ ବିବାହ କରିଥିଲେ ଜଣେ ସଂଗ୍ରାମୀ ଓଡ଼ିଆ ଯୁବକଂକୁ ଏବଂ ସେହି ଦିନଠାରୁ ତାଂକର ସଂଗ୍ରାମମୟ ଜୀବନର ଆରଂଭ। ଓଡ଼ିଶାରେ ଲବଣ ସତ୍ୟାଗ୍ରହ, ଭୂଦାନ ଆଂଦୋଳନ ଓ ସାମ୍ୟବାଦ ଆଂଦୋଳନ ଆଦି କ୍ଷେତ୍ରରେ ତାଂକର ଅବଦାନ ଚିରସ୍ମରଣୀୟ। ଏହି ମହୀୟସୀ ମହିଳା ଓଡ଼ିଶାର ଘରେ ଘରେ 'ନୁ'ମା' ନାଁରେ ପରିଚିତ। ତାଂକର ଅସଲ ନାଁ କ'ଣ ?

(କ) ଶାରଳା ଦେବୀ
(ଖ) ମାଳତୀ ଚୌଧୁରୀ
(ଗ) ରମାଦେବୀ

**ପ୍ରଶ୍ନ-୧୫ :** ନିମ୍ନରେ ଓଡ଼ିଶାର କେତେଜଣ ମୁଖ୍ୟମଂତ୍ରୀ, ରାଜ୍ୟପାଳ, ବାଚସ୍ପତି ଓ ହାଇକୋର୍ଟର ପ୍ରଧାନ ବିଚାରପତିଂକ ନାମ ମିଶିଯାଇଛି। ସେଗୁଡ଼ିକୁ ଅଲଗା କରି ଦେଖାଇଦିଅ।

(କ) ଅଯୋଧ୍ୟାନାଥ ଖୋସ୍‌ଲା (ଝ) ଆକବର ଅଲ୍ଲୀ ଖାଁ
(ଖ) ସଦାଶିବ ତ୍ରିପାଠୀ (ଞ) ନବକୃଷ୍ଣ ଚୌଧୁରୀ
(ଗ) ମୁକୁଂଦ ପ୍ରସାଦ ଦାସ (ଟ) ଚାଂଦୁଲାଲ୍ ତ୍ରିବେଦୀ
(ଘ) ଡ଼ଂବରୁଧର ପାଠକ (ଠ) ସୁକାଂତ କିଶୋର ରାୟ
(ଙ) ଗତିକୃଷ୍ଣ ମିଶ୍ର (ଡ) ଏ. ଲକ୍ଷ୍ମୀବାଈ
(ଚ) ବିଶ୍ୱନାଥ ଦାସ (ଢ) ପ୍ରସନ୍ନ କୁମାର ଦାସ
(ଛ) ଯୋଗେଂଦ୍ର ସିଂହ (ଣ) ହରିଲାଲ ଅଗ୍ରୱାଲ
(ଜ) ଯୁଧିଷ୍ଠିର ଦାସ

# ଓଡ଼ିଶାର ବରପୁତ୍ର

## ଉତ୍ତରମାଳା

୧. (କ) ହରେକୃଷ୍ଣ ମହତାବ : ଉତ୍କଳକେଶରୀ, (ଖ) ଶରଳା ଦାସ : ଶୂଦ୍ରମୁନି
(ଗ) ଗୋପବନ୍ଧୁ ଦାସ : ଉତ୍କଳମଣି, (ଘ) ମଧୁସୂଦନ ଦାସ : ଉତ୍କଳଗୌରବ
(ଙ) ଜଗନ୍ନାଥ ଦାସ : ଅତିବଡ଼ୀ, (ଚ) କୁନ୍ତଳା କୁମାରୀ ସାବତ : ଉତ୍କଳଭାରତୀ
(ଛ) ଗୌରୀଶଙ୍କର ରାୟ : କର୍ମବୀର

୨. (କ) ନନ୍ଦକିଶୋର ବଳ
(ଖ) ଫକୀରମୋହନ ସେନାପତି
(ଗ) ପ୍ରାଣକୃଷ୍ଣ ପଡ଼ିହାରୀ
(ଘ) ନିମାଇଁ ହରିଚନ୍ଦନ
(ଙ) ଅଭିମନ୍ୟୁ ସାମନ୍ତସିଂହାର
(ଚ) ବଳଦେବ ରଥ
(ଛ) ନବକୃଷ୍ଣ ଚୌଧୁରୀ
(ଜ) ବିର୍ସା ମୁଣ୍ଡା
(ଝ) ଲକ୍ଷ୍ମଣ ନାୟକ
(ଞ) ଅଭିନ ଚନ୍ଦ୍ର ରାଓ

୩. (କ) ବ୍ରଜମୋହନ
୪. (ଖ) ମୋହନ ନାୟକ
୫. (କ) ବେଣୀମାଧବ ଦାସ
୬. (ଗ) ଖଣ୍ଡପଡ଼ା
୭. (ଖ) ଡାକ୍ତର ଅଭିନ ଚନ୍ଦ୍ର ରାଓ
୮. (ଖ) ଗଞ୍ଜାମ
୯. (ଖ) ସିଦ୍ଧେଶ୍ୱର
୧୦. (ଗ) ଗୋପାଳଚନ୍ଦ୍ର ପ୍ରହରାଜ

୧୧. (କ) ମଲ୍ଲିକାଶପୁର : ଫକୀରମୋହନ ସେନାପତି
(ଖ) ସୁଆଣ୍ଡୋ : ଗୋପବନ୍ଧୁ ଦାସ, (ଗ) ତେନ୍ତୁଳିଆ : ଲକ୍ଷ୍ମଣ ନାୟକ
(ଘ) ପରଳାଖେମୁଣ୍ଡି : କୃଷ୍ଣଚନ୍ଦ୍ର ଗଜପତି, (ଙ) ବାମଣ୍ଡା : ସାର୍ ବାସୁଦେବ ସୁଦ୍ଧଳ ଦେବ
(ଚ) ସତ୍ୟଭାମାପୁର : ମଧୁସୂଦନ ଦାସ (ଛ) ଖିଣ୍ଡା : ବୀର ସୁରେନ୍ଦ୍ର ସାଏ

୧୨. (କ) ଦୈତାରି ଦାଶ ଓ ସ୍ୱର୍ଣ୍ଣମୟୀ ଦେବୀ : ଉତ୍କଳମଣି ଗୋପବନ୍ଧୁ
(ଖ) ସୁନ୍ଦର ନାରାୟଣ ରାୟ ଓ ଚାରିଣୀ ଦେବୀ : କବିବର ରାଧାନାଥ
(ଗ) ବିଶ୍ୱନାଥ ପଡ଼ିହାରୀ ଓ ଜୟନ୍ତୀ ଦେବୀ : ଶିକ୍ଷାବିତ୍ ପ୍ରାଣକୃଷ୍ଣ
(ଘ) ଗୋପାଳ ବଲ୍ଲଭ ଦାସ : ନାରୀନେତ୍ରୀ ରମାଦେବୀ
(ଙ) ଲକ୍ଷ୍ମଣ ଚରଣ ସେନାପତି : ବ୍ୟାସକବି ଫକୀର ମୋହନ
(ଚ) ଜାନକୀନାଥ ବୋଷ : ନେତାଜୀ ସୁଭାଷ
(ଛ) ପଦ୍ମନାଭ ନାୟକ : ସହିଦ ଲକ୍ଷ୍ମଣ

୧୩. (ଖ) ବିଶ୍ୱନାଥ ଦାସ
୧୪. (ଖ) ମାଳତୀ ଚୌଧୁରୀ

୧୫. ମୁଖ୍ୟମନ୍ତ୍ରୀ :
ସଦାଶିବ ତ୍ରିପାଠୀ
ବିଶ୍ୱନାଥ ଦାସ
ନବକୃଷ୍ଣ ଚୌଧୁରୀ

ରାଜ୍ୟପାଳ :
ଅଯୋଧ୍ୟାନାଥ ଖୋସଲା
ଯୋଗେନ୍ଦ୍ର ସିଂହ
ଆକବର ଅଲ୍ଲୀ ଖାଁ
ଚନ୍ଦ୍ରଲାଲ ତ୍ରିବେଦୀ

ବାଚସ୍ପତି :
ମୁକୁନ୍ଦ ପ୍ରସାଦ ଦାସ
ଯୁଧିଷ୍ଠିର ଦାସ
ଏ. ଲକ୍ଷ୍ମୀବାଈ
ପ୍ରସନ୍ନ କୁମାର ଦାସ

ହାଇକୋର୍ଟର ପ୍ରଧାନ ବିଚାରପତି :
ତମ୍ବରୁଧର ପାଠକ
ଗତିକୃଷ୍ଣ ମିଶ୍ର
ସୁକାନ୍ତ କିଶୋର ରାୟ
ହରିଲାଲ ଅଗ୍ରୱାଲ

# ଭାଷା ଓ ସାହିତ୍ୟ

*"ଓଡ଼ିଆ ଆଂଭ ମାତୃଭାଷା, ଓଡ଼ିଆ ଆମ ପ୍ରାଣ*
*ଓଡ଼ିଶା ଦେଶରେ ଜନ୍ମ ଆମର, ଓଡ଼ିଆର କରୁ ତାଣ*
*ଆସ ଆସ ଭାଇ ମନପ୍ରାଣ ଦେଇ, ରଖିବା ଓଡ଼ିଆ ମାନ*
*କହିବା ଓଡ଼ିଆ, ପଢ଼ିବା ଓଡ଼ିଆ, ଗାଇବା ଓଡ଼ିଆ ଗାନ"*

- କିଶୋର ଚଂଦ୍ର ଦେବ, ସିଂହଭୂମି

**ଓ**ଡ଼ିଆ ଜାତିର ଏକ ସାଂସ୍କୃତିକ ବୈଶିଷ୍ଟ୍ୟ ହେଲା, ଏହା କାଳ ଓ କୀର୍ତିରେ ଯେତିକି ବିଶ୍ୱାସ କରେ, ବ୍ୟକ୍ତି ଓ ଯଶରେ ସେତିକି ବିଶ୍ୱାସ କରେନାହିଁ। ସେଥିପାଇଁ ଇଂଦ୍ରଦ୍ୟୁମ୍ନ ଜଗନ୍ନାଥଙ୍କ ମଂଦିର ତୋଳିସାରି ଏ କୀର୍ତିକୁ ନିଜର ବୋଲି ଦାବି କରିବାକୁ ବଂଶରେ କେହି ନ ରହଂତୁ ବୋଲି ଜଗନ୍ନାଥଙ୍କଠାରେ ବରଭିକ୍ଷା କରିଥିଲେ। ସେହିପରି ଓଡ଼ିଆ କବିଂକର କେତେ କାବ୍ୟ ଅନ୍ୟମାନଂକ ଭଣିତାରେ ଯାଇଛି ତ, ଆହୁରି କେତେ ଏମିତି କାଳଗର୍ଭରେ ନିଶ୍ଚିହ୍ନ ହୋଇଯାଇଛି। ଖ୍ରୀଷ୍ଟାୟ ଏକାଦଶ ଶତାବ୍ଦୀ ମଧ୍ୟରେ ବୌଦ୍ଧ ସିଦ୍ଧାଚାର୍ଯମାନଂକ ରଚନାରୁ ଆରଂଭ କରି ଆଜିର ଆଧୁନିକ ଓଡ଼ିଆ ରଚନା ପର୍ଯଂତ ଓଡ଼ିଆ ସାହିତ୍ୟର କ୍ରମ-ବିକାଶର ଧାରା ଯେତିକି ବୈଚିତ୍ରପୂର୍ଣ, ସେତିକି ପ୍ରଣିଧାନଯୋଗ୍ୟ।

**ପ୍ରଶ୍ନ-୧ :** ଖ୍ରୀଷ୍ଟାୟ ଅଷ୍ଟମ ଶତାବ୍ଦୀରୁ ଏକାଦଶ ଶତାବ୍ଦୀ ମଧ୍ୟରେ ଓଡ଼ିଶାର ବୌଦ୍ଧ, ସିଦ୍ଧାଚାର୍ଯମାନଂକ ଦ୍ୱାରା ସହଜଯାନର ସାଧନାତତ୍ତ୍ୱ ସଂବଳିତ ଅନେକଗୁଡ଼ିଏ ବୌଦ୍ଧଗାନ ରଚିତ ହୋଇଛି, ଯାହା କି ଓଡ଼ିଆ ସାହିତ୍ୟର ପ୍ରାଚୀନତମ ନିଦର୍ଶନ। ଏହି ରଚନାଗୁଡ଼ିକୁ କ'ଣ କୁହାଯାଏ ?

(କ) ନାଥ ସାହିତ୍ୟ
(ଖ) ଚର୍ଯାପଦ
(ଗ) ସରହପା ଗୀତି

**ପ୍ରଶ୍ନ-୨ :** ଓଡ଼ିଶାର ଘରେ ଘରେ ଲୋକମୁଖରେ ଭାଗବତ ଏବେ ବି ଜନପ୍ରିୟ। ଏହି ଜନପ୍ରିୟତାର ଅନେକଗୁଡ଼ିଏ କାରଣ ରହିଅଛି। ମାତ୍ର ସେଥିରୁ ଗୋଟିଏ ହେଉଛି ଏହାର ଛଂଦ। ଓଡ଼ିଆ ଭାଗବତ ଏକ ନିର୍ଦ୍ଦିଷ୍ଟ ବୃତ୍ତରେ ରଚିତ ଏବଂ ଏହି ବୃତ୍ତଟି ଜଗନ୍ନାଥ ଦାସଂକ ଓଡ଼ିଆ ସାହିତ୍ୟକୁ ଏକ ବିଶେଷ ଦାନ। ଏହା ବୋଧହୁଏ ଓଡ଼ିଆ ଛଂଦ ଜଗତରେ ସରଳତମ ବୃତ୍ତ। ଏହାର ନାମ କ'ଣ ?

(କ) ଦାଂଡୀବୃତ୍ତ
(ଖ) ନବାକ୍ଷରୀ ବୃତ୍ତ
(ଗ) ରସକୋଇଲା ବୃତ୍ତ

ପ୍ରଶ୍ନ-୩ : ଓଡ଼ିଆ ରାଜାମାନଙ୍କର ରାଜତ୍ବର ଇତିହାସ ଓ ଶ୍ରୀମନ୍ଦିରର ଦୈନିକ ନୀତିର ବିବରଣୀ ଏକ ନିର୍ଦ୍ଦିଷ୍ଟ ଗ୍ରନ୍ଥରେ ଲିପିବଦ୍ଧ ହୋଇ ରହୁଥିଲା । ଏହା ପ୍ରାମାଣିକ ନ ହେଲେ ମଧ୍ୟ ଓଡ଼ିଶାର ପ୍ରାଚୀନ ଇତିହାସ ଅନୁଧ୍ୟାନ କରିବା ପାଇଁ ଏକ ମହାନ୍ ଉପାଦାନ । ଗ୍ରନ୍ଥଟିର ନାଁ କ'ଣ ?

(କ) ନୀଳାଦ୍ରି ମହୋଦୟ
(ଖ) ମାଦଳା ପାଞ୍ଜି
(ଗ) ଶ୍ରୀକ୍ଷେତ୍ର ସଂହିତା

ପ୍ରଶ୍ନ-୪ : 'ଜଗନ୍ନାଥ ହେ, କିଛି ମାଗୁନାହିଁ ତୋତେ', 'ଆହେ ପ୍ରଭୁ କଳା ଶ୍ରୀମୁଖ, କାଳଯାକ ଭଜି ନ ଗଲା ଦୁଃଖ', 'ଦୁଃଖନାଶନ ହେ, ସୁଖ ନ ପାଇଲି ଦିନେ'... ଏହି ଭଜନଗୁଡ଼ିକ ଏକ ନିର୍ଦ୍ଦିଷ୍ଟ କବିଙ୍କର ରଚନା । ତାଙ୍କର ନାଁ କ'ଣ ?

(କ) ଭକ୍ତ ବନମାଳୀ
(ଖ) ଭକ୍ତ ସାଲବେଗ
(ଗ) ଭକ୍ତକବି ମଧୁସୂଦନ

ପ୍ରଶ୍ନ-୫ : ନିମ୍ନଲିଖିତ ପଦଗୁଡ଼ିକ କାହାର ରଚନା, ଚିହ୍ନାଇ ଦିଅ ।

(କ) ମାତୃଭୂମି ମାତୃଭାଷାରେ ମମତା ଯା ହୃଦେ ଜନମି ନାହିଁ,
ତାକୁ ଯେବେ ଜ୍ଞାନୀଗଣରେ ଗଣିବା ଅଜ୍ଞାନ ରହିବେ କାହିଁ ?
(ଖ) ମା' ମା' ବୋଲି କେତେ ମୁଁ ଖୋଜିଲି ମା'କୁ ପାଇଲି ନାହିଁ,
ଭାଇ ଭାଇ ବୋଲି କେତେ ମୁଁ ଡାକିଲି ନ ଦେଲେ ଉତ୍ତର କେହି ।
(ଗ) ରହ ରହ କ୍ଷଣେ ବାଷ୍ପୀୟ ଶକଟ, ଦେଖିବି ଚିଲିକା ଚାରୁ ଚିତ୍ରପଟ ।
(ଘ) ଜଗତେ କେବଳ, ଜନେ ହସିବେ ଏହି ତହୁଁ ଫଳ ।
(ଙ) ଆପଣା ହସ୍ତେ ଜିହ୍ୱା ଛେଦି, କେ'ତାର ଅଛି ପ୍ରତିବାଦୀ ।

ପ୍ରଶ୍ନ-୬ : ନିମ୍ନରେ କେତେଜଣ ଲେଖକଙ୍କ ନାମ ସହ ସେମାନଙ୍କର ଆତ୍ମଜୀବନୀ ପୁସ୍ତକର ନାମ ଦିଆଯାଇଛି । ସେମାନଙ୍କୁ ମିଳାଇନିଅ ।

| | |
|---|---|
| (କ) କାଳୀଚରଣ ପଟ୍ଟନାୟକ | (୧) ମୋ ଫୁଟାତଙ୍ଗାର କାହାଣୀ |
| (ଖ) ହରେକୃଷ୍ଣ ମହତାବ | (୨) ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ'ସ୍ଥାନ |
| (ଗ) ବିନୋଦ କାନୁନ୍‌ଗୋ | (୩) କୁମ୍ଭାର ଚକ |
| (ଘ) ଫତୁରାନନ୍ଦ | (୪) ଋଣ ପରିଶୋଧ |
| (ଙ) ଗୋଦାବରୀଶ ମିଶ୍ର | (୫) ସାଧନାର ପଥେ |

ପ୍ରଶ୍ନ-୭ : ଆଦିବାସୀ ଭାଷାରେ ପର୍ଯ୍ୟାପ୍ତ ମୌଖିକ ସାହିତ୍ୟ ଥିଲେ ମଧ୍ୟ ଉପଯୁକ୍ତ ଲିପି ଅଭାବରୁ ସେ ସବୁକୁ ସ୍ଥାୟୀ ରୂପ ଦେବା ସମ୍ଭବ ହେଉ ନ ଥିଲା । ରାଇରଙ୍ଗପୁରର

ପଂଡିତ ରଘୁନାଥ ମୁର୍ମୁ ୩୦ଟି ଅକ୍ଷର ବିଶିଷ୍ଟ ଏକ ଲିପିମାଳା ଉଦ୍‌ଭାବନ କରିଥିଲେ, ଯାହା କି ଏକ ବିଜ୍ଞାନ ସମ୍ମତ ଲିପିମାଳା ହିସାବରେ ସରକାରଂକ ଦ୍ୱାରା ବିଧିବଦ୍ଧ ସ୍ୱୀକୃତି ଲାଭ କରିଛି । ଏହି ଲିପିର ନାମ 'ଅଲଚିକି' । ମାତ୍ର ଏହା କେଉଁ ନିର୍ଦ୍ଦିଷ୍ଟ ଆଦିବାସୀ ଭାଷାର ଲିପି ରୂପେ ସ୍ୱୀକୃତି ଲାଭ କରିଛି ?

(କ) ଜୁଆଂଗ ଭାଷା
(ଖ) ସାଂତାଳୀ ଭାଷା
(ଗ) କୁଇ ଭାଷା

ପ୍ରଶ୍ନ-୮ : 'ଅଂଧଦେଶକୁ ଗଲି ଦର୍ପଣ ବିକି, କଂଧ ହସ୍ତରେ ଦେଲି ଗୋଧନ ଟେକି ।' ଲୋକମୁଖରେ ଏବେ ବି ଶୁଣିବାକୁ ମିଳୁଥିବା ଏଭଳି ପ୍ରବଚନର ସ୍ରଷ୍ଟା ଜଣେ ଚତୁର ହାସ୍ୟରସିକ କବି, ଯେ କି ଗଂଜାମ ଜିଲ୍ଲାରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ ପୁରୀ ଜିଲ୍ଲାର ଇଟାମାଟିଠାରେ ବସବାସ କରି ସାହିତ୍ୟ ସାଧନା କରୁଥିଲେ । ତାଂକ ନାଁ କ'ଣ ?

(କ) କବିସୂର୍ଯ୍ୟ ବଳଦେବ ରଥ
(ଖ) ଯଦୁମଣି ମହାପାତ୍ର
(ଗ) ବ୍ରଜନାଥ ବଡ଼ଜେନା

ପ୍ରଶ୍ନ-୯ : 'ଚଂଦ୍ରମଣି ବାବୁ', 'ସୁଲୋଚନା' ଓ 'ଭଦରଖିଆ ଟୋକା ମକରା', ଏ ସମସ୍ତେ ବ୍ୟାସକବି ଫକୀରମୋହନଂକର ଏକ ନିର୍ଦ୍ଦିଷ୍ଟ ଗଳ୍ପର ଚରିତ୍ର । ଗଳ୍ପଟି ଏତେ ପରିଚିତ ଯେ, ତା'ସଂପର୍କରେ ଅଧିକ ସୂଚନା ଦେବାର ଆବଶ୍ୟକତା ନାହିଁ । ଗଳ୍ପଟିର ନାଁ କ'ଣ ?

(କ) ରେବତୀ
(ଖ) ସୁନା ବୋହୂ
(ଗ) ପେଟେଂଟ୍ ମେଡିସିନ୍

ପ୍ରଶ୍ନ-୧୦ : 'ବିଲୁଆ ବଡ଼ ଚତୁର । ପଇଡ଼ ବଡ଼ ମଧୁର, ବଉଳ ଫୁଲର ବାସ । ଚହଟଇ ଚଉପାଶ ।' ଓଡ଼ିଆ ଅକ୍ଷର ଶିକ୍ଷା ପାଇଁ 'ବର୍ଣ୍ଣବୋଧ'ର ଏଇଭଳି ସରଳ ଓ ସ୍ମରଣୀୟ ରଚନାଗୁଡ଼ିକ ଓଡ଼ିଶାର ପ୍ରତ୍ୟେକ ଘରେଘରେ ସାଧାରଣ ଲୋକକଥାର ଏକ ଅଂଶ ପାଲଟିଯାଇଛି । ଏହି ବର୍ଣ୍ଣବୋଧର ରଚୟିତା କିଏ ?

(କ) ଗୋପାଳ ଚଂଦ୍ର ପ୍ରହରାଜ
(ଖ) ଭକ୍ତକବି ମଧୁସୂଦନ ରାଓ
(ଗ) ଅତିବଡ଼ୀ ଜଗନ୍ନାଥ ଦାସ

ପ୍ରଶ୍ନ-୧୧ : ଓଡ଼ିଶାରୁ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାରପ୍ରାପ୍ତ ଏକମାତ୍ର ଇଂଲିଶ୍ ପୁସ୍ତକ 'ରିଲେସନ୍‌ସିପ୍'ର ରଚୟିତା କିଏ ?

(କ) ଜୟଂତ ମହାପାତ୍ର
(ଖ) ମନୋଜ ଦାସ
(ଗ) ସୀତାକାଂତ ମହାପାତ୍ର

ପ୍ରଶ୍ନ-୧୨ : 'କ'ଠାରୁ 'କ୍ଷ' କ୍ରମରେ ଓଡ଼ିଆ ବ୍ୟଂଜନ ବର୍ଣ୍ଣମାଳାର ପ୍ରତ୍ୟେକ ଅକ୍ଷରକୁ ପ୍ରତି ଚରଣର ଆଦ୍ୟରେ ରଖି ଯେଉଁ ଗୀତି କବିତା ରଚନା କରାଯାଏ, ତାହାର ନାମ କ'ଣ ?

(କ) ଚଉପଦୀ
(ଖ) ଚଉତିଶା
(ଗ) ଖଂଡକାବ୍ୟ

ପ୍ରଶ୍ନ-୧୩ : ନିମ୍ନରେ ଓଡ଼ିଶାର କେତୋଟି ପ୍ରମୁଖ ସାହିତ୍ୟକୃତିର ନାମ ସହ ସମ୍ମୁଖସ୍ଥ ସ୍ତଂଭରେ ରଚୟିତାଂକ ନାମ ଦିଆଯାଇଛି । ସେମାନଂକୁ ମିଳାଇନିଅ ।

| | | | |
|---|---|---|---|
| (କ) | ଲାବଣ୍ୟବତୀ | (୧) | ମାୟାଧର ମାନସିଂହ |
| (ଖ) | ନୀଳଶୈଳ | (୨) | କାଳିଂଦୀ ଚରଣ ପାଣିଗ୍ରାହୀ |
| (ଗ) | ବିଦଗ୍ଧ ଚିଂତାମଣି | (୩) | ଦୀନକୃଷ୍ଣ ଦାସ |
| (ଘ) | ଯାଜ୍ଞସେନୀ | (୪) | ରମାକାଂତ ରଥ |
| (ଙ) | ମାଟିର ମଣିଷ | (୫) | ଗୋପୀନାଥ ମହାଂତି |
| (ଚ) | ଧୂପ | (୬) | ଗଂଗାଧର ମେହେର |
| (ଛ) | ତପସ୍ୱିନୀ | (୭) | ଉପେନ୍ଦ୍ର ଭଂଜ |
| (ଜ) | ରସକଲ୍ଲୋଳ | (୮) | ଅଭିମନ୍ୟୁ ସାମଂତସିଂହାର |
| (ଝ) | ମାଟିମଟାଳ | (୯) | ପ୍ରତିଭା ରାୟ |
| (ଞ) | ଶ୍ରୀରାଧା | (୧୦) | ସୁରେଂଦ୍ର ମହାଂତି |

ପ୍ରଶ୍ନ-୧୪ : 'ଜଳମଗ୍ନ ଜନପଦେ ରହି କେହି ଡାକୁଛି ଅଦୂରେ ।
ଶୁଭୁନାହିଁ ତା'ର ଡାକ ସରକାର କାହିଁ କେଉଁ ଦୂରେ ॥'
ଏହି ଶତାବ୍ଦୀର ପଚାଶ ଦଶକରେ ଓଡ଼ିଶାର ବନ୍ୟା ବିଭୀଷିକାକୁ ଲକ୍ଷ୍ୟରେ ରଖି ଜଣେ ଜାତୀୟବାଦୀ କବି ତତ୍‌କାଳୀନ ସରକାରଂକ ଉଦ୍ଦେଶ୍ୟରେ ଏହି ବ୍ୟଂଗାତ୍ମକ କବିତା ରଚନା କରିଥିଲେ । ଓଡ଼ିଶାର ଅନ୍ୟତମ ନିର୍ଭୀକ ସମାଲୋଚନାମୂଳକ ପତ୍ରିକା 'ନିଆଁଖୁଂଟା'ର ପ୍ରତିଷ୍ଠାତା ହିସାବରେ ଏହି କବି ବେଶ୍ ଜଣାଶୁଣା । ତାଂକର ନାଁ କ'ଣ ?

(କ) ମନମୋହନ ମିଶ୍ର
(ଖ) ଗୋଦାବରୀଶ ମିଶ୍ର
(ଗ) ଗୋଦାବରୀଶ ମହାପାତ୍ର

ପ୍ରଶ୍ନ-୧୫ : ନିମ୍ନଲିଖିତ ପତ୍ରିକାର ନାମ ସହ ତାହାର ପ୍ରତିଷ୍ଠାତା/ସଂପାଦକଙ୍କ ନାମ ମିଳାଇ ନିଅ ।

| | | |
|---|---|---|
| (କ) | ଝଙ୍କାର | ଗୌରୀଶଂକର ରାୟ |
| (ଖ) | ଦୈନିକ ଆଶା | ଅଚ୍ୟୁତାନଂଦ କର |
| (ଗ) | ସହକାର | ହରେକୃଷ୍ଣ ମହତାବ |
| (ଘ) | ଦୁର୍ମୁଖ | ଶଶିଭୂଷଣ ରଥ |
| (ଙ) | ଉତ୍କଳ ଦୀପିକା | ରାମକୃଷ୍ଣ ନଂଦ |
| (ଚ) | ସଂସାର | ବାଳକୃଷ୍ଣ କର |

# ଭାଷା ଓ ସାହିତ୍ୟ

## ଉତ୍ତରମାଳା

୧. (ଖ) ଚର୍ଯାପଦ, ୨. (ଖ) ନବାକ୍ଷରୀ ବୃତ୍ତ,

୩. (ଖ) ମାଦଳା ପାଂଜି, ୪. (କ) ଭଉ ବନମାଳୀ

୫. (କ) ଗଂଗାଧର ମେହେର, (ଖ) ମଧୁସୂଦନ ଦାସ, (ଗ) ଗୋପବଂଧୁ ଦାସ, (ଘ) ବଳଦେବ ରଥ, (ଙ) ଜଗନ୍ନାଥ ଦାସ,

୬. (କ) କାଳୀଚରଣ ପଟ୍ଟନାୟକ : କୁଂଭାରଚକ
(ଖ) ହରେକୃଷ୍ଣ ମହତାବ : ସାଧନାର ପଥେ
(ଗ) ବିନୋଦ କାନୁନ୍‌ଗୋ : ଋଣ ପରିଶୋଧ
(ଘ) ଫତୁରାନଂଦ : ମୋ'ଫୁଟା ଡଂଗାର କାହାଣୀ
(ଙ) ଗୋଦାବରୀଶ ମିଶ୍ର - ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ'ସ୍ଥାନ

୭. (ଖ) ସାଁତାଳୀ ଭାଷା ୮. (ଖ) ଯଦୁମଣି ମହାପାତ୍ର ୯. (ଗ) ପେଟେଂଟ୍ ମେଡିସିନ୍

୧୦. (ଖ) ଭକ୍ତକବି ମଧୁସୂଦନ ରାଓ, ୧୧. (କ) ଜୟଂତ ମହାପାତ୍ର, ୧୨. (ଖ) ଚଉତିଶା

୧୩. (କ) ଲାବଣ୍ୟବତୀ : ଉପେନ୍ଦ୍ର ଭଂଜ, (ଖ) ନୀଳଶୈଳ : ସୁରେନ୍ଦ୍ର ମହାଂତି
(ଗ) ବିଦଗ୍ଧ ଚିଂତାମଣି : ଅଭିମନ୍ୟୁ ସାମଂତସିଂହାର
(ଘ) ଯାଜ୍ଞସେନୀ : ପ୍ରତିଭା ରାୟ
(ଙ) ମାଟିର ମଣିଷ : କାଳିଂଦୀ ଚରଣ ପାଣିଗ୍ରାହୀ
(ଚ) ଧୂପ : ମାୟାଧର ମାନସିଂହ, (ଛ) ତପସ୍ୱିନୀ : ଗଂଗାଧର ମେହେର
(ଜ) ରସକଲ୍ଲୋଳ : ଦୀନକୃଷ୍ଣ ଦାସ, (ଝ) ମାଟିମଟାଳ : ଗୋପୀନାଥ ମହାଂତି
(ଞ) ଶ୍ରୀରାଧା : ରମାକାଂତ ରଥ

୧୪. (ଗ) ଗୋଦାବରୀଶ ମହାପାତ୍ର

୧୫. (କ) ଝଂକାର : ହରେକୃଷ୍ଣ ମହତାବ, (ଖ) ଦୈନିକ ଆଶା : ଶଶିଭୂଷଣ ରଥ
(ଗ) ସହକାର : ବାଳକୃଷ୍ଣ କର, (ଘ) ଦୁର୍ମୁଖ : ଅଚ୍ୟୁତାନଂଦ କର
(ଙ) ଉତ୍କଳଦୀପିକା : ଗୌରୀଶଂକର ରାୟ, (ଚ) ସଂସାର : ରାମକୃଷ୍ଣ ନଂଦ

# ପର୍ଯ୍ୟଟନ ସଂଭାର

*'ଅଯି ଏ ଶୋଭାର କାହିଁ ପଟାନ୍ତର ?*
*ଥିଲେ ଥିବ ସ୍ୱର୍ଗେ, ମର୍ତ୍ତ୍ୟେ ଅଗୋଚର,*
*ଯାଇଅଛି ଦେଖି, କହ, କେଉଁ ଜନ*
*ଏ ଲୋକ ସଦୃଶ ଅପରା ଭୁବନ ?*
- ରାଧାନାଥ ରାୟ

**ଉ**ତ୍କଳ ଭୁବନ ବାସ୍ତବରେ ଶୋଭାର ଗଂତାଘର । ପର୍ଯ୍ୟଟକଂକର ସ୍ୱର୍ଗ । ଏକାଦିକ୍ରମେ ସୁଉଚ୍ଚ ପର୍ବତଶ୍ରେଣୀ, ଘନଜଂଗଲ, ସୁରମ୍ୟ ମହୋଦଧିତଟ, କାରୁକାର୍ଯ୍ୟପୂର୍ଣ୍ଣ ମଂଦିରମାଳା, ତୀର୍ଥସ୍ଥାନ, ଜାତିଜାତିର ପଶୁପକ୍ଷୀ ଓ ବୈଚିତ୍ର୍ୟପୂର୍ଣ୍ଣ ଆଦିବାସୀ ଜୀବନଶୈଳୀ ଏମିତି କେଉଁ ରାଜ୍ୟରେ ଏକାଠି ଦେଖିବାକୁ ମିଳେନାହିଁ । ମରାଳମାଳିନୀ ନୀଳାଂବୁ ଚିଲିକା ବା ମଂଦିର କାରୁକଳାର ଉତ୍କର୍ଷ କୋଣାର୍କ ଭଳି ଅନନ୍ୟ ପର୍ଯ୍ୟଟନ କେଂଦ୍ର ସାରା ଦେଶରେ ଦୁର୍ଲଭ । ବର୍ଷର ସବୁ ଋତୁରେ ସବୁ ପ୍ରକାର ରୁଚିର ପର୍ଯ୍ୟଟକଂକ ପାଇଁ ଓଡ଼ିଶା ଆକର୍ଷଣର କେଂଦ୍ର ।

**ପ୍ରଶ୍ନ-୧ :** କୋଣାର୍କ ମଂଦିର ପରି ଅନ୍ୟ ଏକ ସୂର୍ଯ୍ୟ ମଂଦିର ଓଡ଼ିଶାର ଏକ ଉପକୂଳବର୍ତ୍ତୀ ଜିଲ୍ଲାରେ ଦେଖିବାକୁ ମିଳେ । ଏହି ମଂଦିରଟି ମଧ୍ୟ ଏକ ରଥ ରୂପରେ ନିର୍ମିତ ଏବଂ ସାତୋଟି ଅଶ୍ୱ ଯୋଚାଯାଇଥିବା ଏହି ମଂଦିରରେ ସୂର୍ଯ୍ୟ ବିରାଜମାନ କରିଛଂତି । ବିଶ୍ୱାସ କରାଯାଏ ଯେ, ମଂଦିର ନିକଟରେ ସମୁଦ୍ର ଥିଲା, ମାତ୍ର ତାହା ଏବେ ୩୨ କି.ମି. ଦୂରକୁ ଘୁଂଚିଯାଇଛି । ଏହି ମଂଦିରର ନାମ ବିରଂଚିନାରାୟଣ ମଂଦିର ଏବଂ ମଂଦିର ନିକଟବର୍ତ୍ତୀ 'ପାଳିଆ' ଗ୍ରାମରେ ପୂର୍ବେ ଏକ ବଂଦର ଥିଲା ବୋଲି ବିଶ୍ୱାସ କରାଯାଏ । ଏହି ମଂଦିରଟି କେଉଁ ଜିଲ୍ଲାରେ ଅବସ୍ଥିତ ?

(କ) ଭଦ୍ରକ
(ଖ) କଟକ
(ଗ) ଗଂଜାମ

**ପ୍ରଶ୍ନ-୨ :** କଳା ଓ ଭାସ୍କର୍ଯ୍ୟର ଗଂତାଘର ଓଡ଼ିଶାରେ ବିଭିନ୍ନ ଧର୍ମର ବା ବିଭିନ୍ନ ଶୈଳୀର ମୂର୍ତ୍ତି କେଉଁ ଦୂରଦୂରାଂତ ଗ୍ରାମରୁ ମିଳିବା ବିଚିତ୍ର ନୁହେଁ । ମାତ୍ର ରାଜ୍ୟର କୌଣସି ଏକ ନଦୀର ପାଣିସୁଅ ମୁହଁରେ ପଥର ଉପରେ ଅନଂତଶୟନରେ ଥିବା ଏକ ବିରାଟକାୟ ବିଷ୍ଣୁମୂର୍ତ୍ତି ମିଳିବା ନିଶ୍ଚୟ ବିସ୍ମୟକର । ପଥର ଉପରେ ବନ୍ୟା ସମୟରେ ବାଲି ଓ ଗୋଡ଼ି ମାଡ଼ରେ ମୂର୍ତ୍ତିର ଅନେକ ଅଂଶ କ୍ଷୟ ହୋଇଗଲାଣି । ବନ୍ୟା ପରେ

ଅନେକ ସମୟରେ ସ୍ଥାନୀୟ ଲୋକେ ଏହି ମୂର୍ତି ଉପରୁ ବାଲି କାଢ଼ି ତାହାର ପୂଜା କରଂତି । ତେବେ ଏହି ବିଷ୍ଣୁ ମୂର୍ତି କେଉଁ ନଦୀ ଶଯ୍ୟାରେ ଅବସ୍ଥିତ ଏବଂ ସ୍ଥାନଟି କେଉ ଜିଲ୍ଲାରେ ?

(କ) ବ୍ରାହ୍ମଣୀ - ଅନୁଗୁଳ
(ଖ) ବୈତରଣୀ - ଯାଜପୁର
(ଗ) ମହାନଦୀ - ସୁବର୍ଣ୍ଣପୁର

ପ୍ରଶ୍ନ-୩ : ଓଡ଼ିଶାର ନଂଦନକାନନଠାରେ ବିଶ୍ୱର ସର୍ବପ୍ରଥମ ଧଳାବାଘ ସଫାରି ପ୍ରତିଷ୍ଠିତ ହୋଇଛି । ନଂଦନକାନନର ବିଶେଷତ୍ୱ ଏହି କି ଯେ, ଏଠରେ ଥିବା ଦୁଇଟି ସାଧାରଣ ମହାବଳ ବାଘଂକଠାରୁ ଆକସ୍ମିକ ଭାବରେ ୧୯୮୦ ମସିହାରେ ତିନୋଟି ଧଳାବାଘ ଜନ୍ମ ନେଇଥିଲେ, ଯାହା କି ଦେଶବିଦେଶରେ ଅସଂଖ୍ୟ ଜୀବବିଜ୍ଞାନୀଂକ ଦୃଷ୍ଟି ଆକର୍ଷଣ କରିଥିଲା । ନଂଦନକାନନରେ ଏହି ଧଳାବାଘମାନଂକର ବଂଶ ସୃଷ୍ଟିକାରୀ ଏହି ମହାବଳ ବାଘ ଦୁଇଟିଂକର ନାଁ କ'ଣ ?

(କ) ଦୀପକ ଓ ଗଂଗା
(ଖ) ପ୍ରଦୀପ ଓ ଶିଖା
(ଗ) ଦୀପକ ଓ ଶୁଭ୍ରା

ପ୍ରଶ୍ନ-୪ : ଇଟାଲିର ପିସାଠାରେ ଥିବା ଆନତ ଟାୱାର ଭଳି ଓଡ଼ିଶାର ସଂବଲପୁର ଜିଲ୍ଲାରେ ଗୋଟିଏ ଆନତ ମଂଦିର ଅଛି । ସେହି ମଂଦିରଟିର ନାଁ କ'ଣ ?

(କ) ବୁଢ଼ାରଜା ମଂଦିର, ସଂବଲପୁର
(ଖ) ବିମଳେଶ୍ୱର ମଂଦିର, ହୁମା
(ଗ) ସମଲେଶ୍ୱରୀ ମଂଦିର, ସଂବଲପୁର

ପ୍ରଶ୍ନ-୫ : ଶୀତଋତୁରେ ଚିଲିକାକୁ ବିଦେଶରୁ ନାନା ଜାତିର ଅସଂଖ୍ୟ ପକ୍ଷୀ ଆସଂତି ଏବଂ ସେମାନେ ଚିଲିକା ଭିତରେ ଥିବା ଏକ ନିର୍ଦ୍ଦିଷ୍ଟ ଅଂଚଳରେ ମୁଖ୍ୟତଃ ଦେଖିବାକୁ ମିଳଂତି । ପକ୍ଷୀମାନଂକୁ ଦେଖିବା ଲାଗି ପର୍ଯ୍ୟଟକମାନେ ଚିଲିକାର ଏହି ସ୍ଥାନକୁ ବହୁ ସଂଖ୍ୟାରେ ଆସଂତି । ସ୍ଥାନଟିର ନାଁ କ'ଣ ?

(କ) କାଳିଜାଈ
(ଖ) ଚଢ଼େଇହଗା ପାହାଡ଼
(ଗ) ନଳବଣ

ପ୍ରଶ୍ନ-୬ : ଢେଂକାନାଳ ସହରଠାରୁ ପ୍ରାୟ ୬ କି.ମି. ଦୂରରେ ଏକ ଲଂବା ପାହାଡ଼ ଉପରେ ରହିଛି ଏକ ପରିତ୍ୟକ୍ତ ରାଜପ୍ରାସାଦ । ପ୍ରାୟ ୧୦୦ ବଖରା ଘର ବିଶିଷ୍ଟ ଏହି ପ୍ରାସାଦ

ବହୁ ଦୂରରୁ ପର୍ଯ୍ୟଟକଙ୍କ ଆଖିରେ ପଡ଼ିଥାଏ। ଏହି ପରିତ୍ୟକ୍ତ କୋଠିର ବୈଶିଷ୍ଟ୍ୟ ଏହି କି ଯେ, ଏହା କେବଳ ପ୍ରଜାବେଠି ଦ୍ୱାରା ହିଁ ନିର୍ମିତ। ପ୍ରଜା ନିର୍ଯାତନାର ମୂକସାକ୍ଷୀ ଏହି ପ୍ରାସାଦଟିର ନାଁ କ'ଣ ?

(କ) ପୋଡ଼ାକୋଠି
(ଖ) ଯତନ ନଗର
(ଗ) ବସନ୍ତ ନିବାସ

**ପ୍ରଶ୍ନ-୭ :** ଦକ୍ଷିଣ ଓଡ଼ିଶାର 'ଡୁଡୁମା' ଜଳପ୍ରପାତର ନାଁ ଏବେ ବି ପର୍ଯ୍ୟଟକମାନଙ୍କ ମନରେ ଗଭୀର ଉତ୍କଣ୍ଠା ଓ ରୋମାଂଚ ଭରିଦେଇଥାଏ। ଜୟପୁରଠାରୁ ପ୍ରାୟ ୭୦ କି.ମି. ଦୂରରେ ଥିବା ଏହି ପ୍ରପାତର ଉଚ୍ଚତା ୧୫୭.୫ ମିଟର୍। ମାତ୍ର ଯେଉଁ ନଦୀ ଉପରେ ଏହି ଜଳପ୍ରପାତଟି ଅବସ୍ଥିତ, ସେଥିରେ ଏକ ଜଳବିଦ୍ୟୁତ୍ ଯୋଜନା କାର୍ଯ୍ୟକାରୀ ହେବା ପରେ ପ୍ରପାତର ଉପର ଭାଗରୁ ଜଳସ୍ରୋତକୁ ଅନ୍ୟ ଦିଗରେ ବଙ୍କାଇ ନେବା ଆବଶ୍ୟକ ହେଲା। ସେହି କାରଣରୁ ପ୍ରପାତଟିର ରମଣୀୟ ରୂପଶୋଭା ଅନେକାଂଶରେ ନଷ୍ଟ ହୋଇଯାଇଛି। ଏହି ପ୍ରପାତଟି କେଉଁ ନଦୀ ଉପରେ ଅବସ୍ଥିତ ?

(କ) ମାଛକୁଣ୍ଡ
(ଖ) ଇନ୍ଦ୍ରାବତୀ
(ଗ) କୋଲାବ୍

**ପ୍ରଶ୍ନ-୮ :** କେନ୍ଦୁଝର ଜିଲ୍ଲାରେ ଏକ ଗୁରୁତ୍ୱପୂର୍ଣ୍ଣ ପର୍ଯ୍ୟଟନ କେନ୍ଦ୍ର ରହିଛି, ଯେଉଁଠାରେ ଦୁଇଟି ବିଶାଳ ପଥର ପରସ୍ପର ସହ ଏଭଳି ଭାବରେ ଖଞ୍ଜି ହୋଇରହିଛି ଯେ, ତାହା ଏକ ଛତା ଭଳି ଦେଖାଯାଏ। ତାହାର ନାମ 'ରାବଣଛାୟା'। ଏହି ପଥର ଉପରେ ବହୁ ପ୍ରାଚୀନ କାଳର ଏକ ରାଜକୀୟ ଶୋଭାଯାତ୍ରାର ଚିତ୍ର ଅଙ୍କିତ ହୋଇରହିଛି। ଏହି ଚିତ୍ରର ଶୈଳୀ ଅନେକାଂଶରେ ଅଜନ୍ତା ଓ ଏଲୋରାର ଚିତ୍ରକଳାର ଶୈଳୀ ସହ ସାଦୃଶ୍ୟ ରଖେ। କେନ୍ଦୁଝର-ଯାଜପୁର ରାଜ୍ୟ ରାଜପଥଠାରୁ କିଛି ଦୂରରେ ଅବସ୍ଥିତ ଏହି ପର୍ଯ୍ୟଟନ କେନ୍ଦ୍ରଟିର ନାଁ କ'ଣ ?

(କ) ଢେଙ୍କିକୋଟ
(ଖ) ସୀତାବିଞ୍ଜି
(ଗ) ମୁର୍ଗା ମହାଦେବ

**ପ୍ରଶ୍ନ-୯ :** ପୁରୀ ସହରର ଉତ୍ତର ପଶ୍ଚିମ ଦିଗରେ ଗୁଣ୍ଡିଚା ମନ୍ଦିରଠାରୁ କିଛି ଦୂରରେ ଏକ ବହୁ ପ୍ରାଚୀନ ପୁଷ୍କରିଣୀ ଅଛି, ଯେଉଁଠାରେ ବହୁ ସଂଖ୍ୟକ କଇଁଛ ଏବେ ମଧ୍ୟ ଅଛନ୍ତି। ପ୍ରବାଦ ଅଛି ଯେ, ପୁରୀରେ ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ନିର୍ମାଣ କାଳରେ ମନ୍ଦିର ପାଇଁ ପଥର ବୋହି ବୋହି ଲୋକଙ୍କ ପିଠିରେ ବିନ୍ଧି ହୋଇ ସେମାନେ କୁରୁମ (କଇଁଛ) ପାଲଟି ଗଲେ ଓ ସେହି କୁରୁମମାନେ ଏ ପର୍ଯ୍ୟନ୍ତ ଏହି ପୁଷ୍କରିଣୀରେ

ଅଛଂତି । ଏହି ପୁଷ୍କରିଣୀଟିର ନାଁ କ'ଣ ?

(କ) ଶ୍ୱେତଗଂଗା
(ଖ) ନରେଂଦ୍ର
(ଗ) ଇଂଦ୍ରଦ୍ୟୁମ୍ନ

ପ୍ରଶ୍ନ-୧୦ : ନୂଆପଡ଼ା ଜିଲ୍ଲାର ଖଡ଼ିଆଳ ସହରଠାରୁ କିଛି ଦୂରରେ ଏକ କୌତୂହଳପୂର୍ଣ୍ଣ ପର୍ଯ୍ୟଟନ କେଂଦ୍ର ରହିଛି । ସେଠାରେ ଗୁଂଫା ଭିତରେ ଥିବା ପଥର କାଂଥ ଉପରେ ନୂତନ ପ୍ରସ୍ତରଯୁଗର ଆଦିମ ମଣିଷର ହସ୍ତାଂକିତ ଚିତ୍ରକଳା ସବୁ ରହିଛି । ଏହି ସ୍ଥାନଟିର ନାଁ କ'ଣ ?

(କ) ପାତାଳଗଂଗା
(ଖ) ଯୋଗୀମଠ
(ଗ) ଜୁନାଗଡ଼

ପ୍ରଶ୍ନ-୧୧ : ଫୁଲବାଣୀ ଜିଲ୍ଲାର ବାଲିଗୁଡ଼ା ତହସିଲରେ ଗୋଟିଏ ସହର ଅଛି, ଯାହାର ମନୋରମ ପରିବେଶ ଦୃଷ୍ଟିରୁ ତାହାକୁ ଓଡ଼ିଶାର କାଶ୍ମୀର ବୋଲି ଆଖ୍ୟା ଦିଆଯାଇଥାଏ । ଶୀତଦିନେ ଏହି ସହରରେ ବରଫ ପଡ଼ିବାର ମଧ୍ୟ ଦୃଷ୍ଟାଂତ ରହିଛି । ସେ ସହରଟିର ନାଁ କ'ଣ ?

(କ) ଦାରିଂଗବାଡ଼ି
(ଖ) ଜି. ଉଦୟଗିରି
(ଗ) ଚକାପାଦ

ପ୍ରଶ୍ନ-୧୨ : ଓଡ଼ିଶାର ପର୍ଯ୍ୟଟନ ବିଭାଗ ତରଫରୁ ରାଜ୍ୟର ତିନୋଟି ବୌଦ୍ଧପୀଠକୁ ଯୋଗକରି ଏକ ହୀରକ ତ୍ରିଭୁଜ ବା 'ଡାଏମଂଡ୍ ଟ୍ରାଏଂଗଲ୍'ର କଳ୍ପନା କରାଯାଇଛି । ସେ ପୀଠ ତିନୋଟି କ'ଣ କ'ଣ ?

(କ) ଖଂଡଗିରି, ଧଉଳିଗିରି, ଉଦୟଗିରି
(ଖ) ଲଳିତଗିରି, ଖଂଡଗିରି, ଧଉଳିଗିରି
(ଗ) ରତ୍ନଗିରି, ଲଳିତଗିରି, ଉଦୟଗିରି

ପ୍ରଶ୍ନ-୧୩ : ନିମ୍ନରେ କେତୋଟି ରମଣୀୟ ଜଳପ୍ରପାତର ନାମ ଦିଆଯାଇଛି । ସେଗୁଡ଼ିକୁ ସମ୍ମୁଖସ୍ଥ ସ୍ତଂଭରେ ଥିବା ଜିଲ୍ଲାର ନାମ ସହ ମିଳାଇନିଅ ।

| | | | |
|---|---|---|---|
| (କ) | ସାନଘାଗରା ଓ ବଡ଼ଘାଗରା | (୧) | ଦେବଗଡ଼ |
| (ଖ) | ଫୁରଲିଝରନ୍ | (୨) | ମୟୂରଭଂଜ |
| (ଗ) | ବରେହିପାଣି | (୩) | ସୁଂଦରଗଡ଼ |
| (ଘ) | ପ୍ରଧାନପାଟ | (୪) | କେଂଦୁଝର |
| (ଙ) | ଖଂଡାଧାର | (୫) | କଳାହାଂଡି |

**ପ୍ରଶ୍ନ-୧୪ :** ନିମ୍ନରେ ଦିଆଯାଇଥିବା ପର୍ଯଟନ କେନ୍ଦ୍ରଗୁଡ଼ିକ କେଉଁ ଜିଲ୍ଲାରେ ଅବସ୍ଥିତ, ଚିହ୍ନାଇ ଦିଅ ।

| | | | |
|---|---|---|---|
| (କ) | ମାଗାଗୁଡ଼ା ଉପତ୍ୟକା | (୧) | ବଲାଂଗୀର |
| (ଖ) | ଭିତରକନିକା ଅଭୟାରଣ୍ୟ | (୨) | ବାଲେଶ୍ୱର |
| (ଗ) | ରାଣୀପୁର ଝରିଆଲ | (୩) | ଗଂଜାମ |
| (ଘ) | ଚାଂଦିପୁର କ୍ଷେପଣାସ୍ତ୍ର କେଂଦ୍ର | (୪) | ନୂଆପଡ଼ା |
| (ଙ) | ଗୋପାଳପୁର ବେଳାଭୂମି | (୫) | କେଂନ୍ଦ୍ରାପଡ଼ା |
| (ଚ) | ସପ୍ତଶଯ୍ୟା ପାହାଡ଼ | (୬) | ଗଜପତି |
| (ଛ) | ହୀରାକୁଦ ନଦୀବଂଧ | (୭) | କଟକ |
| (ଜ) | ନଦୀ ପଠାରେ ଧବଳେଶ୍ୱର ମଂଦିର | (୮) | ପୁରୀ |
| (ଝ) | ମହେଂନ୍ଦ୍ରଗିରି ପାହାଡ଼ | (୯) | ଢେଂକାନାଳ |
| (ଞ) | କୁରୁମ ବୌଦ୍ଧପୀଠ | (୧୦) | ସଂବଲପୁର |

**ପ୍ରଶ୍ନ-୧୫ :** ଘଂଚ ଅରଣ୍ୟଘେରା କୋରାପୁଟ ଜିଲ୍ଲାର ଏକ ପାହାଡ଼ ଉପରେ ଏକ ଶୈବପୀଠ ରହିଛି, ଯାହା କି ପର୍ଯଟକମାନଂକର ଆକର୍ଷଣର କେଂନ୍ଦ୍ର । ଏହି ପାହାଡ଼ ଉପରେ ଥିବା ଏକ ଗୁଂଫାରେ ଶିବଂକର ଉପାସନା କରାଯାଏ । ମାତ୍ର କୌତୂହଳର ବିଷୟ ଯେ, ନିକଟସ୍ଥ ଗୁଂଫା ମଧ୍ୟରେ ଗାଈର ପହ୍ନା ପରି ଉପରୁ ଝୁଲି ଆସିଥିବା ଏକ ପଥର ଅଛି, ଯେଉଁଥିରେ କି ଚିର ରହିଛି । କୌଣସି କାମନା କରି ଏହି ଚିରରେ ହାତ ଦେଲେ, ସେଥିରୁ ଯଦି କ୍ଷୀର ଝରିଆସେ, ତେବେ ଇଚ୍ଛା ନିଶ୍ଚୟ ପୂରଣ ହୁଏ ବୋଲି ଲୋକଂକର ବିଶ୍ୱାସ । ଏ ପଥରର ନାମ 'କାମଧେନୁ' । ତେବେ ଏହି ପୀଠର ନାଁ କ'ଣ ?

(କ) ଗୁପ୍ତେଶ୍ୱର
(ଖ) ମୀନାଝୋଲା
(ଗ) ଦେବଗିରି

# ପର୍ଯ୍ୟଟନ ସଂଭାର

## ଉତ୍ତରମାଳା

୧. (କ) ଭଦ୍ରକ

୨. (କ) ବ୍ରାହ୍ମଣୀ-ଅନୁଗୁଳ

୩. (କ) ଦୀପକ ଓ ଗଂଗା

୪. (ଖ) ବିମଳେଶ୍ୱର ମଂଦିର, ହୁମା

୫. (ଗ) ନଳବଣ

୬. (ଖ) ଯତନନଗର

୭. (କ) ମାଛକୁଂଡ

୮. (ଖ) ସୀତାବିଂଝି

୯. (ଗ) ଇଂଦ୍ରଦ୍ୟୁମ୍ନ

୧୦. (ଖ) ଯୋଗୀମଠ

୧୧. (କ) ଦାରିଂଗବାଡ଼ି

୧୨. (ଗ) ରତ୍ନଗିରି, ଲଳିତଗିରି, ଉଦୟଗିରି

୧୩. (କ) ସାନଘାଘରା ଓ ବଡ଼ଘାଘରା : କେଂଦୁଝର
(ଖ) ଫୁର୍‌ଲିଝରନ : କଳାହାଂଡି
(ଗ) ବରେହିପାଣି : ମୟୂରଭଂଜ
(ଘ) ପ୍ରଧାନପାଟ : ଦେବଗଡ଼
(ଙ) ଖଂଡାଧାର : ସୁଂଦରଗଡ଼

୧୪. (କ) ମାରାଗୁଡ଼ା : ନୂଆପଡ଼ା
(ଖ) ଭିତରକନିକା : କେଂଦ୍ରାପଡ଼ା
(ଗ) ରାଣୀପୁର ଝରିଆଲ : ବଲାଂଗୀର
(ଘ) ଚାଂଦିପୁର କ୍ଷେପଣାସ୍ତ୍ର : ବାଲେଶ୍ୱର
(ଙ) ଗୋପାଳପୁର : ଗଂଜାମ
(ଚ) ସପ୍ତଶଯ୍ୟା ପାହାଡ଼ : ଢେଂକାନାଳ
(ଛ) ହୀରାକୁଦ ନଦୀବଂଧ : ସଂବଲପୁର
(ଜ) ଧବଳେଶ୍ୱର ମଂଦିର : କଟକ
(ଝ) ମହେଂଦ୍ରଗିରି ପାହାଡ଼ : ଗଜପତି
(ଞ) କୁରୁମ ବୌଦ୍ଧପୀଠ : ପୁରୀ

୧୫. (କ) ଗୁପ୍ତେଶ୍ୱର

# ଆଧୁନିକ ଓଡ଼ିଶା

*"ଉଠରେ ଉଠରେ ଉତ୍କଳ ସନ୍ତାନ*
*ଉଠିବୁ ତୁ କେତେଦିନେ*
*ପୁରବ ଗୌରବ ପୁରବ ସମ୍ପଦ*
*ପଡ଼ିବ କି କେବେ ମନେ ?"*

- ମଧୁସୂଦନ ଦାସ

**ଅ**ତୀତରେ ଏକ ଅଭିନବ ଉତ୍କଳ ନିର୍ମାଣର ସ୍ୱପ୍ନ ନେଇ ସ୍ୱତଂତ୍ର ଉତ୍କଳ ପ୍ରଦେଶ ଗଠନ ସକାଶେ ସଂଗ୍ରାମ ଆରଂଭ ହୋଇଥିଲା । ଏ ଭିତରେ ବହୁ ବର୍ଷ ବିତିଗଲାଣି । ରାଜ୍ୟର ବିପୁଳ ପ୍ରାକୃତିକ ସଂପଦ ଏବେ ବି ଆଧୁନିକ ଓଡ଼ିଶାର ଯୁବ ସମାଜ ପ୍ରତି ଅନନ୍ୟ ଆକର୍ଷଣର ବିଷୟବସ୍ତୁ । ଆଗାମୀ ବର୍ଷମାନଂକରେ ଓଡ଼ିଶା ଏକ ସମୃଦ୍ଧିଶାଳୀ ରାଜ୍ୟ ରୂପେ ଠିଆ ହେବ, ଏଥି ପାଇଁ ଆଶା ଓ ଆଶ୍ୱାସନା ଅନେକ ।

**ପ୍ରଶ୍ନ-୧ :** ଆଜି ଯେଉଁଠାରେ ଭୁବନେଶ୍ୱର ସହର ଗଢ଼ି ଉଠିଛି, ତାହା ଦିନେ ଜଂଗଲ ଓ ଲତାଗୁଳ୍ମ ଭରା ଟାଂଗର ଭୂଇଁ ଥିଲା । ଏହି ସହରର ପ୍ଲାନ୍ ପ୍ରସ୍ତୁତ କରିଥିଲେ ଡକ୍ଟର ଅଟୋ. ଏଚ୍. କେନିସ୍‌ବର୍ଜର । ତେବେ କେଉଁ ମସିହାରେ ଏହି ସହରର ଶିଳାନ୍ୟାସ କରାଯାଇଥିଲା ?

(କ) ୧୯୩୬
(ଖ) ୧୯୪୮
(ଗ) ୧୯୫୦

**ପ୍ରଶ୍ନ-୨ :** ଏହି ଶତାବ୍ଦୀର ଆରଂଭରେ ଅର୍ଥାତ୍ ୧୯୦୦ ମସିହାରେ ଓଡ଼ିଶାର ଜନସଂଖ୍ୟା ଥିଲା ୧ କୋଟି ୩ ଲକ୍ଷ ଓ ତାହା ବଢ଼ିବଢ଼ି ୧୯୯୧ ମସିହା ବେଳକୁ ୩ କୋଟି ୧୫ ଲକ୍ଷ ୧୨ ହଜାର ୭୦ରେ ପହଂଚିଲାଣି । ୧୯୦୧ରୁ ୧୯୯୧ ମଧ୍ୟରେ ରାଜ୍ୟର ଜନସଂଖ୍ୟା କ୍ରମାଗତ ଭାବରେ ବଢ଼ିବାକୁ ଲାଗିଥିଲେ ମଧ୍ୟ ଆଶ୍ଚର୍ଯଜନକ ଭାବରେ ଏହି ଶତାବ୍ଦୀର ଏକ ନିର୍ଦ୍ଦିଷ୍ଟ ୧୦ ବର୍ଷ ସମୟକାଳ ମଧ୍ୟରେ ଓଡ଼ିଶାର ଜନସଂଖ୍ୟା ବୃଦ୍ଧି ପାଇବା ପରିବର୍ତ୍ତେ ହ୍ରାସ ପାଇଥିଲା । କେଉଁ ସମୟକାଳ ମଧ୍ୟରେ ଓଡ଼ିଶାର ଜନସଂଖ୍ୟା ଏଭଳି ହ୍ରାସ ପାଇଥିଲା ?

(କ) ୧୯୧୧ରୁ ୧୯୨୧
(ଖ) ୧୯୩୧ରୁ ୧୯୪୧
(ଗ) ୧୯୦୧ରୁ ୧୯୧୧

ପ୍ରଶ୍ନ-୩ : ଓଡ଼ିଶାର ମୟୂରଭଞ୍ଜ ଜିଲ୍ଲାକୁ ରେଳ ଯୋଗାଯୋଗ ପାଇଁ ଏକ ନ୍ୟାରୋଗେଜ୍ ରେଳପଥ ରହିଛି । ବାଲେଶ୍ୱର ଜିଲ୍ଲାର 'ରୁପ୍‌ସା' ଷ୍ଟେସନ୍‌ଠାରୁ ଏହି ରେଳପଥ ଆରଂଭ ହୋଇ ମୟୂରଭଞ୍ଜ ଜିଲ୍ଲା ଭିତରକୁ ଯାଇଛି । ତେବେ ଏହି ରେଳପଥ ରୁପ୍‌ସାକୁ କେଉଁ ଷ୍ଟେସନ୍ ସହ ଯୋଗ କରୁଛି ? ଅର୍ଥାତ୍ ଏହି ରେଳପଥରେ ଥିବା ଶେଷ ଷ୍ଟେସନ୍‌ଟିର ନାଁ କ'ଣ ?

(କ) ବାଘଡ଼ା ରୋଡ୍
(ଖ) ବାରିପଦା
(ଗ) ବାଁଗିରିପୋଷି

ପ୍ରଶ୍ନ-୪ : ଓଡ଼ିଶାର ମହିଳାମାନେ ସମାଜର ବିଭିନ୍ନ କ୍ଷେତ୍ରରେ ନିଜର ଯୋଗ୍ୟତା ଓ ପାରଦର୍ଶିତା ପ୍ରତିପାଦନ କରିଛଂତି । ସେହିଭଳି ଜଣେ ଦକ୍ଷ ଓଡ଼ିଆ ମହିଳା ଓଡ଼ିଶା ହାଇକୋର୍ଟର ବିଚାରପତି ପଦବିରେ ମଧ୍ୟ ଅଧିଷ୍ଠିତା ହୋଇଛଂତି । ଓଡ଼ିଶା ହାଇକୋର୍ଟର ଏହି ପ୍ରଥମ ମହିଳା ବିଚାରପତିଂକ ନାମ କ'ଣ ?

(କ) ଶ୍ରୀମତୀ ବିଦ୍ୟୁତ୍‌ପ୍ରଭା ସାମଂତରାୟ
(ଖ) ଶ୍ରୀମତୀ ଉର୍ମିଳା ରାୟ
(ଗ) ଶ୍ରୀମତୀ ଅମିୟ କୁମାରୀ ପାଢ଼ୀ

ପ୍ରଶ୍ନ-୫ : ଓଡ଼ିଶା ଭିତର ଦେଇ ଗୋଟିଏ ଜାତୀୟ ରାଜପଥ କୋରାପୁଟ ଜିଲ୍ଲା ଭିତରେ ଯୋଗାଯୋଗ ପାଇଁ ଏକ ମୁଖ୍ୟ ମାଧ୍ୟମ । ଏହି ଜାତୀୟ ରାଜପଥର ନଂବର କେତେ ?

(କ) ୪୨
(ଖ) ୬
(ଗ) ୪୩

ପ୍ରଶ୍ନ-୬ : ବନ୍ୟା ପ୍ରପୀଡ଼ିତ ମହାନଦୀର ତ୍ରିକୋଣ ଭୂମି ଅଂଚଳକୁ ବନ୍ୟାଦାଉରୁ ରକ୍ଷା କରିବା ଓ ଜଳବିଦ୍ୟୁତ୍ ଶକ୍ତି ଉତ୍ପାଦନର ଯୁଗଳ ଲକ୍ଷ୍ୟ ନେଇ ସ୍ୱାଧୀନତାର ଠିକ୍ ପରେ ପରେ ଓଡ଼ିଶାରେ ହୀରାକୁଦ ନଦୀବଂଧ ଯୋଜନାର ଆରମ୍ଭ ହୋଇଥିଲା । ଉଭୟ ପାର୍ଶ୍ୱରେ ୨୧ କି.ମି. ଦୈର୍ଘ୍ୟର ଡାଇକ୍ ଓ ୫ କି.ମି. ମୁଖ୍ୟ ବଂଧ ଥିବା ହୀରାକୁଦ ଆମ ଦେଶର ଦୀର୍ଘତମ ନଦୀବଂଧ । ତେବେ କେଉଁଦିନ ଏହି ବଂଧର ଶୁଭ ଉଦ୍‌ଘାଟନ କରାଯାଇଥିଲା ?

(କ) ୧୯୪୮ ଏପ୍ରିଲ୍ ୧୩
(ଖ) ୧୯୪୭ ନଭେଂବର ୧୪
(ଗ) ୧୯୫୭ ଜାନୁଆରି ୧୩

ପ୍ରଶ୍ନ-୭ : ବିକଳାଂଗମାନଂକ ପାଇଁ କୃତ୍ରିମ ଅଂଗ ତିଆରି ଓ ଅସ୍ଥିଶଲ୍ୟ ଚିକିତ୍ସା କ୍ଷେତ୍ରରେ ଗବେଷଣା ଓ ସ୍ୱତଂତ୍ର ତାଲିମ ପ୍ରଦାନ ପାଇଁ ଓଡ଼ିଶାରେ ଏକ ସଂସ୍ଥା ରହିଛି । ଏହାର ନାମ 'ଜାତୀୟ ପୁନର୍ବାସ ପ୍ରଶିକ୍ଷଣ ଓ ଗବେଷଣା ସଂସ୍ଥା' ବା 'ନିରଟାର୍' । ଏହି ସଂସ୍ଥାରେ ଚିକିତ୍ସା ପାଇଁ ବହୁ ଦୂରଦୂରାଂତରରୁ ରୋଗୀ ଆସି ପହଂଚୁଛଂତି । ତେବେ ଏହି ସଂସ୍ଥାଟି ଓଡ଼ିଶାର କେଉଁଠାରେ ଅବସ୍ଥିତ ?

(କ) ଟାଂଗୀ-ଚାଂଦପୁର
(ଖ) ବୁର୍ଲା
(ଗ) ଓଲଟପୁର

ପ୍ରଶ୍ନ-୮ : ପାରାଦୀପଠାରେ ଥିବା ପ୍ରମୁଖ ସାରକାରଖାନା ପାରାଦୀପ ଫସ୍‌ଫେଟ୍‌ସ ଲିମିଟେଡ୍ (ପି.ପି.ଏଲ୍.) ଏକ ବିଦେଶୀ ରାଷ୍ଟ୍ରର ସହାୟତାରେ ନିର୍ମିତ ହୋଇଥିଲା । ସେହି ରାଷ୍ଟ୍ରଟିର ନାଁ କ'ଣ ?

(କ) ନାଉରୁ
(ଖ) ପଶ୍ଚିମ ଜର୍ମାନି
(ଗ) ଫ୍ରାନ୍‌ସ

ପ୍ରଶ୍ନ-୯ : ଆମ ଦେଶରେ ଓଡ଼ିଶାର ସବୁଠାରୁ ବଡ଼ ନଦୀ ମହାନଦୀ ନାମରେ ଏକ ସୁପରଫାଷ୍ଟ୍ ଏକ୍‌ସପ୍ରେସ୍ ଯାତାୟାତ କରେ । ତାହାର ନାମ 'ମହାନଦୀ ଏକ୍‌ସପ୍ରେସ୍' । ଏହି ଟ୍ରେନ୍‌ଟି କେଉଁ ଦୁଇଟି ଷ୍ଟେସନ୍ ମଧ୍ୟରେ ଯାତାୟାତ କରିଥାଏ ?

(କ) ସଂବଲପୁର ଓ ହାଓଡ଼ା
(ଖ) ସଂବଲପୁର ଓ ବିଲାସପୁର
(ଗ) ବିଲାସପୁର ଓ ଭୋପାଳ

ପ୍ରଶ୍ନ-୧୦ : ଡାକ ଯୋଗାଯୋଗରେ ଓଡ଼ିଶା ନାମରେ ଏକ ଜାତୀୟ ରେକର୍ଡ ରହିଛି । ସେହି ରେକର୍ଡଟି କ'ଣ ?

(କ) ୧୯୮୧ ମସିହାର ହିସାବ ଅନୁସାରେ ଓଡ଼ିଶାରେ ସବୁଠାରୁ କମ୍ ସଂଖ୍ୟକ ଡାକଘର ଥିଲା ।
(ଖ) ଓଡ଼ିଶା ହେଉଛି ଏକମାତ୍ର ପ୍ରଦେଶ, ଯେଉଁଠାରେ ବର୍ତମାନ ସୁଦ୍ଧା ପାରା ଯୋଗେ ଡାକ ଯୋଗାଯୋଗ ବ୍ୟବସ୍ଥା ରହିଛି ।
(ଗ) ସ୍ୱାଧୀନ ଭାରତର ପ୍ରଥମ ପ୍ରକାଶିତ ଡାକ ଟିକଟ୍‌ରେ ଓଡ଼ିଶାର ଜଣେ ବରପୁତ୍ରଂକର ଫଟୋଚିତ୍ର ରହିଥିଲା ।

ପ୍ରଶ୍ନ-୧୧ : ପ୍ରାଶାସନିକ ସୁବିଧା ପାଇଁ ଜିଲ୍ଲା ପୁନର୍ଗଠନ ହେବା ପରେ ଓଡ଼ିଶାର ମାନଚିତ୍ର ବଦଳିଯାଇଛି । ନିମ୍ନରେ ଗୋଟିଏ ଜିଲ୍ଲାକୁ ଘେରି ରହିଥିବା ଅନ୍ୟ କେତେଗୁଡ଼ିଏ ଜିଲ୍ଲାର ନାମ ଦିଆଯାଇଛି । ସେ ସବୁ ଜିଲ୍ଲାକୁ ଦେଖି ସେମାନଂକ ମଝିରେ ଘେରାଇ ହୋଇ ରହିଥିବା ଜିଲ୍ଲାଟିର ନାମ ବତାଇଦିଅ ।

(କ) ବରଗଡ଼, ଝାରସୁଗୁଡ଼ା, ଦେବଗଡ଼, ସୁଂଦରଗଡ଼, ସୋନପୁର ଓ ଅନୁଗୁଳ
(ଖ) କେଂଦୁଝର, ଭଦ୍ରକ, କଟକ, କେଂଦ୍ରାପଡ଼ା ଓ ଢେଂକାନାଳ
(ଗ) ଗଂଜାମ, ଗଜପତି, ରାୟଗଡ଼ା, କଳାହାଂଡି, ବଲାଂଗୀର, ବୌଦ୍ଧ ଓ ନୟାଗଡ଼
(ଘ) ଖୋର୍ଧା, ଗଂଜାମ, ଫୁଲବାଣୀ, ବୌଦ୍ଧ, ଅନୁଗୁଳ ଓ କଟକ
(ଙ) ସୁଂଦରଗଡ଼, ଅନୁଗୁଳ, ଢେଂକାନାଳ, ଯାଜପୁର, ଭଦ୍ରକ, ବାଲେଶ୍ୱର ଓ ମୟୂରଭଂଜ

ପ୍ରଶ୍ନ-୧୨ : ନିମ୍ନରେ ଦିଆଯାଇଥିବା ଖେଳାଳିମାନଂକ ନାମରୁ ସେମାନେ କେଉଁ କ୍ରୀଡ଼ା ସହ ସଂପୃକ୍ତ ଚିହ୍ନାଇ ଦିଅ ।

(କ) ମାଇକେଲ୍ କିଂଡୋ
(ଖ) ହରମୋହନ ପ୍ରହରାଜ
(ଗ) ସୁନୀଲ ପାତ୍ର
(ଘ) ମିନତି ମହାପାତ୍ର
(ଙ) ସନତ ମିଶ୍ର
(ଚ) ସଂଜୟ ରାଉଳ
(ଛ) ଶେଖର ଚଂଦ୍ର ସାହୁ

ପ୍ରଶ୍ନ-୧୩ : ୧୯୪୯ ମସିହାରେ ପ୍ରଥମ କରି ଓଡ଼ିଶା କ୍ରିକେଟ୍ ଏସୋସିଏସନ୍ ଗଠିତ ହେଲା ଓ ସେହି ବର୍ଷ ଜାତୀୟ କ୍ରିକେଟ୍ କଂଟ୍ରୋଲ୍ ବୋର୍ଡ୍‌ର ଅନୁମୋଦନ ଲାଭ କରି ଓଡ଼ିଶା ରଣଜୀ ଟ୍ରଫି ମ୍ୟାଚ୍ ଖେଳିବା ପାଇଁ ଯୋଗ୍ୟତା ହାସଲ କଲା । ତେବେ ଓଡ଼ିଶାର ପ୍ରଥମ ରଣଜୀ ଟ୍ରଫି ମ୍ୟାଚ୍ ଥିଲା ଜାମ୍‌ସେଦ୍‌ପୁରଠାରେ ବିହାର ବିପକ୍ଷରେ । ଏହି ପ୍ରଥମ ରଣଜୀ ଟ୍ରଫି ମ୍ୟାଚ୍‌ରେ ଓଡ଼ିଶା ଦଳର ଅଧିନାୟକ କିଏ ଥିଲେ ?

(କ) ଏଲ୍.ଆଇ. ପରିଜା
(ଖ) ଜୟ ପଟ୍ଟନାୟକ
(ଗ) ଉଦ୍ଧବ ପଟ୍ଟନାୟକ

ପ୍ରଶ୍ନ-୧୪ : କଟକଠାରେ ଥିବା ଓଡ଼ିଶାର ଏକମାତ୍ର ଇନ୍‌ଡୋର୍ ଷ୍ଟାଡିୟମ୍‌ର ଜଣେ ରାଷ୍ଟ୍ରୀୟ ନେତାଂକ ନାମରେ ନାମିତ । ତାଂକର ନାମ କ'ଣ ?

(କ) ଜବାହରଲାଲ ନେହେରୁ
(ଖ) ସୁଭାଷ ଚଂଦ୍ର ବୋଷ
(ଗ) ଇଂଦିରା ଗାଂଧୀ

ପ୍ରଶ୍ନ-୧୫ : ଓଡ଼ିଶାରେ ଥିବା ଏକ କେଂଦ୍ରୀୟ ଗବେଷଣା ପ୍ରତିଷ୍ଠାନର ଗବେଷକମାନେ କୃତ୍ରିମ ଉପାୟରେ ମୁକ୍ତା ଉତ୍ପାଦନ କରି ସାରା ଦେଶର ଦୃଷ୍ଟି ଆକର୍ଷଣ କରିପାରିଛଂତି । ଏହି ଗବେଷଣା ପ୍ରତିଷ୍ଠାନଟିର ନାଁ କ'ଣ ?

(କ) ସି.ଆଇ.ଏଫ୍.ଏ., ଭୁବନେଶ୍ୱର
(ଖ) ସି.ଆର୍.ଆର୍.ଆଇ., କଟକ
(ଗ) ଆର୍.ପି.ଆର୍.ସି., ଭୁବନେଶ୍ୱର

# ଆଧୁନିକ ଓଡ଼ିଶା

## ଉତ୍ତରମାଳା

୧. (ଖ) ୧୯୪୮
୨. (କ) ୧୯୧୯ରୁ ୧୯୨୧
୩. (ଗ) ବାଂଗିରିପୋଷି
୪. (ଗ) ଶ୍ରୀମତୀ ଅମିୟ କୁମାରୀ ପାଢ଼ୀ
୫. (ଗ) ୪୩ ନଂବର ଜାତୀୟ ରାଜପଥ
୬. (ଗ) ୧୯୫୭ ଜାନୁଆରି ୧୩ ଶୁଭ ଉଦ୍‌ଘାଟନ
୭. (ଗ) ଓଲଟପୁର
୮. (କ) ନାଉରୁ
୯. (ଗ) ବିଲାସପୁର ଓ ଭୋପାଳ
୧୦. (ଖ) ଓଡ଼ିଶାରେ ଏବେ ମଧ୍ୟ ପାରା ଯୋଗେ ଡାକ ଯୋଗାଯୋଗର ବ୍ୟବସ୍ଥା ରହିଛି ।
୧୧. (କ) ସଂବଲପୁର
(ଖ) ଯାଜପୁର
(ଗ) ଫୁଲବାଣୀ
(ଘ) ନୟାଗଡ଼
(ଙ) କେଂଦୁଝର
୧୨. (କ) ହକି
(ଖ) କ୍ରିକେଟ୍
(ଗ) ସୁଂଦର ସ୍ୱାସ୍ଥ୍ୟ
(ଘ) ସାଇକେଲ୍ ଚାଳନା
(ଙ) ବ୍ୟାଡ୍‌ମିଂଟନ୍
(ଚ) କ୍ରିକେଟ୍
(ଛ) ଚେସ୍
୧୩. (ଗ) ଉଦ୍ଧବ ପଟ୍ଟନାୟକ
୧୪. (କ) ଜବାହରଲାଲ ନେହେରୁ
୧୫. (କ) ସି.ଆଇ.ଏଫ୍.ଏ., ଭୁବନେଶ୍ୱର

# ରାଜନୀତି ଓ ନିର୍ବାଚନ

"ପ୍ରଜା ଲାଗି ରାଜ୍ୟ, ପ୍ରଜାର ଶାସନ,
ଯୁଗେ ଯୁଗେ ଏହା ଶାସ୍ତ୍ରର କଥନ ।
x x x
ନ ଅଟକେ କର୍ମ ନେତାର ଅଭାବେ,
ଧର୍ମ-ନାବ ଚଳେ ଧର୍ମର ପ୍ରଭାବେ ।"
- ଗୋପବନ୍ଧୁ ଦାସ

ଏକ ସ୍ୱତନ୍ତ୍ର ପ୍ରଦେଶ ଭାବେ ଗଠିତ ହେବା ପରଠାରୁ ଓଡ଼ିଶାରେ ନିର୍ବାଚନର ପରଂପରା ଆରଂଭ ହୋଇଛି । ଏଥିରେ ନାନା ଜାତୀୟ ତଥା ଆଂଚଳିକ ଦଳ ମଧ୍ୟ ଭାଗ ନେଇଛଂତି । ମାତ୍ର ଏ ରାଜ୍ୟର ବିଶେଷତ୍ୱ ଏପରି ଯେ, ଏଠାରେ ରାଜନୈତିକ ନେତାମାନେ ଅଧିକାଂଶ ସମୟରେ ଦଳ ଅପେକ୍ଷା ନିଜ ବ୍ୟକ୍ତି ପରିଚୟର ଉତ୍କର୍ଷ ଯୋଗୁଁ ଥରକୁ ଥର ଶାସନ କ୍ଷମତା ହାସଲ କରିଛଂତି ।

ପ୍ରଶ୍ନ-୧ : ଓଡ଼ିଶାରେ ସମୁଦାୟ କେତୋଟି ବିଧାନସଭା ନିର୍ବାଚନ ମଂଡଳୀ ଅଛି । ସେଥି ମଧ୍ୟରୁ କେତୋଟି ଆସନ ଅନୁସୂଚିତ ଜାତି ଓ ଜନଜାତିଂକ ଲାଗି ସଂରକ୍ଷିତ ?

(କ) ୧୪୦ - ଅନୁସୂଚିତ ଜାତି ୧୫, ଜନଜାତି ୨୮
(ଖ) ୧୪୭ - ଅନୁସୂଚିତ ଜାତି ୨୨, ଜନଜାତି ୩୪
(ଗ) ୧୪୭ - ଅନୁସୂଚିତ ଜାତି ୨୦, ଜନଜାତି ୨୮

ପ୍ରଶ୍ନ-୨ : ପାର୍ଲାମେଂଟ୍‌ର ଦୁଇଟି ସଦନ ଲୋକସଭା ଓ ରାଜ୍ୟସଭା ପାଇଁ ଓଡ଼ିଶାର ସଦସ୍ୟ ସଂଖ୍ୟା କେତେ ?

(କ) ଲୋକସଭା ୨୦, ରାଜ୍ୟସଭା ୧୧
(ଖ) ଲୋକସଭା ୨୧, ରାଜ୍ୟସଭା ୧୦
(ଗ) ଲୋକସଭା ୨୧, ରାଜ୍ୟସଭା ୧୧

ପ୍ରଶ୍ନ-୩ : ସ୍ୱତଂତ୍ର ଓଡ଼ିଶାର ପ୍ରଥମ ନିର୍ବାଚିତ ସରକାର ଏକ ସଂଖ୍ୟାଲଘୁ ସରକାର ଥିଲା । ଏହି ସରକାର ୧.୪.୧୯୩୭ରେ ଦାୟିତ୍ୱ ଗ୍ରହଣ କରିଥିଲା । ମାତ୍ର ବିଧାନସଭାର ସମ୍ମୁଖୀନ ହେବା ପୂର୍ବରୁ ଏହି ସରକାରର ମୁଖ୍ୟମଂତ୍ରୀ ୧୮.୭.୧୯୩୭ରେ ଇସ୍ତଫା ଦେଇଥିଲେ । ସେତେବେଳେ ମୁଖ୍ୟମଂତ୍ରୀଂକୁ ପ୍ରଧାନମଂତ୍ରୀ କୁହାଯାଉଥିଲା । ପ୍ରଦେଶର ଏହି ସର୍ବପ୍ରଥମ ମୁଖ୍ୟମଂତ୍ରୀ (ପ୍ରଧାନମଂତ୍ରୀ) ଜଣକ କିଏ ?

(କ) ନବକୃଷ୍ଣ ଚୌଧୁରୀ
(ଖ) କୃଷ୍ଣଚଂଦ୍ର ଗଜପତି ନାରାୟଣ ଦେବ
(ଗ) ବିଶ୍ୱନାଥ ଦାଶ

ପ୍ରଶ୍ନ-୪ : ସ୍ୱାଧୀନତା ପରବର୍ତ୍ତୀ ପ୍ରଥମ ସାଧାରଣ ନିର୍ବାଚନ ୧୯୫୨ରେ ହେବା ପରେ ଓଡ଼ିଶାରେ କଂଗ୍ରେସ ଦଳ ଶ୍ରୀ ନବକୃଷ୍ଣ ଚୌଧୁରୀଙ୍କ ନେତୃତ୍ୱରେ ସରକାର ଗଠନ କରିଥିଲା । ମାତ୍ର ସେତେବେଳେ ଓଡ଼ିଶା ବିଧାନସଭାରେ ବିରୋଧୀଦଳ ନେତା ପଦ କିଏ ମଂଡନ କରିଥିଲେ ?

(କ) ରାଜେନ୍ଦ୍ର ନାରାୟଣ ସିଂହଦେଓ
(ଖ) ଗୋଦାବରୀଶ ମିଶ୍ର
(ଗ) ଶ୍ରଦ୍ଧାକର-ସୁପକାର

ପ୍ରଶ୍ନ-୫ : ଏ ପର୍ଯ୍ୟଂତ ଓଡ଼ିଶାରେ ହୋଇଥିବା ବିଭିନ୍ନ ଲୋକସଭା ନିର୍ବାଚନ ମଧ୍ୟରୁ ଥରେ ୧୯୫୨ ଓ ଆଉ ଥରେ ୧୯୬୨ ମସିହାରେ ଦୁଇଜଣ ପ୍ରାର୍ଥୀ ନିର୍ଦ୍ୱଂଦ୍ୱରେ ନିର୍ବାଚିତ ହୋଇଛଂତି । ୧୯୫୨ ମସିହା ନିର୍ବାଚନ ବେଳକୁ ରାଜନୈତିକ ସଚେତନତା ସେତେ ବ୍ୟାପକ ହୋଇ ନ ଥିବାରୁ ଦେଶର ଅନେକଗୁଡ଼ିଏ ନିର୍ବାଚନ ମଂଡଳୀରେ ପ୍ରାର୍ଥୀମାନେ ବିନା ପ୍ରତିଦ୍ୱଂଦ୍ୱିତାରେ ନିର୍ବାଚିତ ହୋଇଥିଲେ । ମାତ୍ର ୧୯୬୨ରେ ଦଳୀୟ ରାଜନୀତି ବେଶ୍ ଜମି ଆସିଥିବା ସମୟରେ ଓଡ଼ିଶାରୁ ଜଣେ ପ୍ରାର୍ଥୀ ନିର୍ଦ୍ୱଂଦ୍ୱରେ ନିର୍ବାଚିତ ହେବା ନିଶ୍ଚିତ ଭାବରେ ଏକ ଅସ୍ୱାଭାବିକ ଘଟନା । ଏହି ପ୍ରାର୍ଥୀଜଣକ କିଏ ଓ ସେ କେଉଁ ନିର୍ବାଚନ ମଂଡଳୀରୁ ନିର୍ବାଚିତ ହୋଇଥିଲେ ?

(କ) ହରେକୃଷ୍ଣ ମହତାବ (ଅନୁଗୁଳ)
(ଖ) ପଂଡିତ ନୀଳକଂଠ ଦାସ (ପୁରୀ)
(ଗ) ଟି. ସାଂଗନା (ରାୟଗଡ଼ା-ଫୁଲବାଣୀ)

ପ୍ରଶ୍ନ-୬ : ଓଡ଼ିଆ ଜ୍ଞାନମଂଡଳର ପ୍ରଣେତା ସ୍ୱର୍ଗତ ବିନୋଦ କାନୁନ୍‌ଗୋ ସାହିତ୍ୟସାଧନା ଛଡ଼ା ନିର୍ବାଚନ ରାଜନୀତିରେ ମଧ୍ୟ ହାତ ଦେଇଥିଲେ । ୧୯୫୨ ମସିହା ସାଧାରଣ ନିର୍ବାଚନରେ ସେ ସୋସାଲିଷ୍ଟ୍ ଦଳ ତରଫରୁ କିଶନନଗର ନିର୍ବାଚନ ମଂଡଳୀରେ କଂଗ୍ରେସ ପ୍ରାର୍ଥୀ ରାଜକୃଷ୍ଣ ବୋଷଙ୍କ ବିରୋଧରେ ଲଢ଼ିଥିଲେ । ମାତ୍ର ଏହି ନିର୍ବାଚନର ଫଳାଫଳ କ'ଣ ହୋଇଥିଲା ?

(କ) ସେ ମାତ୍ର ୧୧,୦୦୦ ଭୋଟ୍‌ରେ ପରାଜିତ ହୋଇଥିଲେ ।
(ଖ) ଜଣେ ସ୍ୱାଧୀନ ପ୍ରାର୍ଥୀଙ୍କ ମୃତ୍ୟୁ ଯୋଗୁଁ ନିର୍ବାଚନ ସ୍ଥଗିତ ହୋଇଥିଲା ।
(ଗ) ସେ ପ୍ରାୟ ୧୧,୦୦୦ରୁ ଅଧିକ ଭୋଟ୍‌ରେ ବିଜୟୀ ହୋଇଥିଲେ । ମାତ୍ର ପରେ ବିଧାନସଭାରୁ ଇସ୍ତଫା ଦେଇଥିଲେ ।

ପ୍ରଶ୍ନ-୭ : ଓଡ଼ିଶାରେ ଏ ପର୍ଯ୍ୟଂତ ହୋଇଥିବା ବିଭିନ୍ନ ଲୋକସଭା ନିର୍ବାଚନ ମଧ୍ୟରୁ ଗୋଟିଏ ନିର୍ବାଚନ ସବୁଠାରୁ ବେଶି ପ୍ରତିଦ୍ୱଂଦ୍ୱିତାମୂଳକ ହୋଇଥିଲା । ଏହି ନିର୍ବାଚନରେ ବିଜୟୀ ପ୍ରାର୍ଥୀ ତାଙ୍କର ନିକଟତମ ପ୍ରତିଦ୍ୱଂଦ୍ୱୀଙ୍କଠାରୁ ମାତ୍ର ୬୬ଟି ଅଧିକ ଭୋଟ ପାଇ ଲୋକସଭାକୁ ନିର୍ବାଚିତ ହୋଇଥିଲେ । ଏହା ଓଡ଼ିଶା ଲୋକସଭା ନିର୍ବାଚନ

ଇତିହାସରେ ଏକ ରେକର୍ଡ । ତେବେ ଏହି ପ୍ରତିଦ୍ୱଂଦ୍ୱୀ ଦୁଇଜଣ କିଏ ଓ ନିର୍ବାଚନ ମଂଡଳୀର ନାମ କ'ଣ ?

(କ) ରବି ରାୟ ଓ ଲକ୍ଷ୍ମଣ ମଳିକ (ଜଗତ୍‌ସିଂହପୁର)
(ଖ) ସୁରେଂଦ୍ର ମହାଂତି ଓ ସୁରେଂଦ୍ରନାଥ ଦ୍ୱିବେଦୀ (କେଂଦ୍ରାପଡ଼ା)
(ଗ) ବ୍ରଜମୋହନ ମହାଂତି ଓ ରଣଜିତ ମହାଂତି (ପୁରୀ)

ପ୍ରଶ୍ନ-୮ : ସ୍ୱତଂତ୍ର ପାର୍ଟି ଓଡ଼ିଶା ରାଜନୀତିରେ ୧୯୬୦ରୁ ୭୬ ଭିତରେ ଏକ ମୁଖ୍ୟ ରାଜନୈତିକ ଦଳର ସ୍ଥାନ ଗ୍ରହଣ କରିଥିଲା । ୧୯୬୨, ୧୯୬୭ ଓ ୧୯୭୧ ବିଧାନସଭା ନିର୍ବାଚନରେ ଏହି ଦଳର ପ୍ରାର୍ଥୀମାନେ ଓଡ଼ିଶାର ବହୁ ସ୍ଥାନରୁ ପ୍ରତିଦ୍ୱଂଦ୍ୱିତା କରିଥିଲେ । ଏହି ଦଳର ନେତା ରାଜେଂଦ୍ର ନାରାୟଣ ସିଂହଦେଓ ଓଡ଼ିଶାର ମୁଖ୍ୟମଂତ୍ରୀ ପଦର ଅଧିକାରୀ ହୋଇପାରିଥିଲେ । ମାତ୍ର ନିର୍ବାଚନରେ ସ୍ୱତଂତ୍ର ଦଳର ସଂକେତ କ'ଣ ଥିଲା ?

(କ) ନିକିତି
(ଖ) ତାରା
(ଗ) ବରଗଛ

ପ୍ରଶ୍ନ-୯ : ଥରେ ଭଦ୍ରକ ଜିଲ୍ଲାର ବାସୁଦେବପୁର ନିର୍ବାଚନ ମଂଡଳୀରେ ଏକ ଐତିହାସିକ ଲଢ଼େଇ ହୋଇଥିଲା ଡକ୍‌ଟର୍ ହରେକୃଷ୍ଣ ମହତାବ ଓ ଶ୍ରୀ ନୀଳମଣି ରାଉତରାୟଂକ ମଧ୍ୟରେ । ଶ୍ରୀ ରାଉତରାୟ କଂଗ୍ରେସ ତରଫରୁ ପ୍ରତିଦ୍ୱଂଦ୍ୱିତା କରୁଥିବାବେଳେ ଡକ୍‌ଟର୍ ମହତାବ ଜନକଂଗ୍ରେସ ଟିକେଟରେ ତାଂକ ବିରୋଧରେ ଲଢ଼ିଥିଲେ । ତେବେ ଏହି ନିର୍ବାଚନଟି କେଉଁ ମସିହାରେ ଅନୁଷ୍ଠିତ ହୋଇଥିଲା ଓ ଏଥିରେ କିଏ ବିଜୟୀ ହୋଇଥିଲେ ?

(କ) ୧୯୬୭ - ହରେକୃଷ୍ଣ ମହତାବ ବିଜୟୀ
(ଖ) ୧୯୫୭ - ନୀଳମଣି ରାଉତରାୟ ବିଜୟୀ
(ଗ) ୧୯୭୧ - ହରେକୃଷ୍ଣ ମହତାବ ବିଜୟୀ

ପ୍ରଶ୍ନ-୧୦ : ୧୯୭୭ ମସିହା ପୂର୍ବରୁ ଅଧିକାଂଶ ସମୟରେ ରାଜ୍ୟରେ ମିଳିତ ମଂତ୍ରୀମଂଡଳ ଦେଖିବାକୁ ମିଳିଥିଲା । ବିଭିନ୍ନ କାରଣରୁ ମଂତ୍ରୀମଂଡଳର ପତନ ହେବା ସଂଗେ ସଂଗେ ରାଜ୍ୟରେ ଅନେକ ଥର ରାଷ୍ଟ୍ରପତି ଶାସନ ମଧ୍ୟ ଜାରି ହୋଇଥିଲା । ତେବେ ପ୍ରଶ୍ନଟି ହେଉଛି ଯେ, ସ୍ୱାଧୀନତା ପରେ ଓ ବର୍ତ୍ତମାନ ସୁଦ୍ଧା ଓଡ଼ିଶାରେ ସବୁଠାରୁ କମ୍ ସମୟ ଶାସନ କ୍ଷମତାରେ ରହିଥିବା ମୁଖ୍ୟମଂତ୍ରୀ ଜଣକ କିଏ ?

(କ) ଶ୍ରୀ ବିନାୟକ ଆଚାର୍ଯ୍ୟ
(ଖ) ଶ୍ରୀ ବିରେନ୍ ମିତ୍ର
(ଗ) ଶ୍ରୀ ହେମାନଂଦ ବିଶ୍ୱାଳ

ପ୍ରଶ୍ନ-୧୧ : ଜ୍ଞାନପୀଠ ପୁରସ୍କାରପ୍ରାପ୍ତ କବି ସଚ୍ଚି ରାଉତରାୟ ତାଙ୍କର କାବ୍ୟକୃତି ଲାଗି ସାରା ଦେଶରେ ପରିଚିତ । ମାତ୍ର ୧୯୬୧ ଜୁନ୍ ୨ ତାରିଖରୁ ୮ ତାରିଖ ଭିତରେ ଓଡ଼ିଶାରେ ଯେଉଁ ମଧ୍ୟବର୍ତ୍ତୀକାଳୀନ ବିଧାନସଭା ନିର୍ବାଚନ ଅନୁଷ୍ଠିତ ହୋଇଥିଲା, ସେଥିରେ ସେ କଂଗ୍ରେସ ଦଳର ପ୍ରାର୍ଥୀ ହିସାବରେ ପ୍ରତିଦ୍ୱନ୍ଦ୍ୱିତା କରିଥିଲେ । ଏହି ନିର୍ବାଚନ ମଣ୍ଡଳୀଟିର ନାମ କ'ଣ ଓ ଏହି ନିର୍ବାଚନର ଫଳାଫଳ କ'ଣ ହୋଇଥିଲା ?

(କ) କଟକ ସଦର, ବିଜୟୀ
(ଖ) ଚୌଦ୍ୱାର, ବିଜୟୀ
(ଗ) ବାଣପୁର, ପରାଜିତ

ପ୍ରଶ୍ନ-୧୨ : ଭାରତର ପୂର୍ବତନ ରାଷ୍ଟ୍ରପତି ସ୍ୱର୍ଗତ ଭିଭି ଗିରିଙ୍କର ଭଉଣୀ ଓଡ଼ିଶାର ରାଜନୈତିକ ଇତିହାସରେ ଏକମାତ୍ର ମହିଳା ଯେ କି ବିଧାନସଭାର ଉପବାଚସ୍ପତି ପଦ ମଣ୍ଡନ କରିଥିଲେ । ସ୍ୱାଧୀନତା ପୂର୍ବରୁ ୧୯୩୭ ଓ ୧୯୪୬ ମସିହା ନିର୍ବାଚନରେ ସେ ମହିଳାମାନଙ୍କ ଲାଗି ସଂରକ୍ଷିତ ବ୍ରହ୍ମପୁର ଆସନରୁ ନିର୍ବାଚିତା ହୋଇଥିଲେ । ତାଙ୍କର ନାମ କ'ଣ ?

(କ) ସରଳା ଗିରି
(ଖ) ଏ. ଲକ୍ଷ୍ମୀବାଈ
(ଗ) ପାର୍ବତୀ ଗିରି

ପ୍ରଶ୍ନ-୧୩ : ୧୯୩୬ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ପରେ ୧୯୩୭ରେ ନିର୍ବାଚନ ହୋଇ ଓଡ଼ିଶାର ପ୍ରଥମ ବିଧାନସଭା ଗଠିତ ହୋଇଥିଲା । ତେବେ ନବଗଠିତ ଓଡ଼ିଶାର ଏହି ସର୍ବପ୍ରଥମ ବିଧାନସଭାରେ ବାଚସ୍ପତି ପଦରେ କିଏ ଅଧିଷ୍ଠିତ ହୋଇଥିଲେ ?

(କ) ଶ୍ରୀ ମୁକୁନ୍ଦ ପ୍ରସାଦ ଦାସ
(ଖ) ଶ୍ରୀ ନନ୍ଦକିଶୋର ଦାସ
(ଗ) ପଣ୍ଡିତ ନୀଳକଣ୍ଠ ଦାସ

ପ୍ରଶ୍ନ-୧୪ : ୧୯୭୧ ମସିହା ମଧ୍ୟବର୍ତ୍ତୀକାଳୀନ ବିଧାନସଭା ନିର୍ବାଚନରେ କୌଣସି ଦଳ ଏକକ ସଂଖ୍ୟାଗରିଷ୍ଠତା ହାସଲ କରିପାରି ନ ଥିଲା । ଏଣୁ ଉତ୍କଳ କଂଗ୍ରେସ, ସ୍ୱତନ୍ତ୍ର ଓ ଝାଡ଼ଖଣ୍ଡ ଦଳ ମିଶି ଏକ ମିଳିତ ସରକାର ଗଠନ କରିଥିଲେ ଓ ଏହି ସରକାରର ନେତୃତ୍ୱ ନେବା ଲାଗି ବୟୋବୃଦ୍ଧ ନେତା ବିଶ୍ୱନାଥ ଦାସଙ୍କୁ ଆମନ୍ତ୍ରିତ କରାଯାଇଥିଲା । ଶ୍ରୀ ଦାସ ମୁଖ୍ୟମନ୍ତ୍ରୀ ହେବା ପରେ ୧୯୭୧ ସେପ୍ଟେମ୍ବରରେ ଏକ ନିର୍ଦ୍ଦିଷ୍ଟ ଉପନିର୍ବାଚନରେ ସ୍ୱାଧୀନ ପ୍ରାର୍ଥୀ ରୂପେ ପ୍ରତିଦ୍ୱନ୍ଦ୍ୱିତା କରି ବିଜୟୀ ହୋଇଥିଲେ । ତେବେ ଏହି ନିର୍ବାଚନ ମଣ୍ଡଳୀର ନାଁ କ'ଣ ?

(କ) କୋଦଳା
(ଖ) ବ୍ରହ୍ମପୁର
(ଗ) ରାଉରକେଲା

ପ୍ରଶ୍ନ-୧୫ : ଓଡ଼ିଶାର ଦୁଇଜଣ ତୁଙ୍ଗ ନେତା ଡକ୍ଟର୍ ହରେକୃଷ୍ଣ ମହତାବ ଓ ଶ୍ରୀ ବିଜୁ ପଟ୍ଟନାୟକ ଥରେ ମୁହାଁମୁହିଁ ବିଧାନସଭା ନିର୍ବାଚନ ଲଢ଼ିଥିଲେ । ୧୯୭୧ ମସିହା ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ବିଜୁ ପଟ୍ଟନାୟକ ଉତ୍କଳ କଂଗ୍ରେସ ତରଫରୁ ଲଢୁଥିବାବେଳେ ଡକ୍ଟର୍ ମହତାବ କଂଗ୍ରେସ ଟିକଟ୍‌ରେ ତାଂକ ବିରୋଧରେ ଠିଆ ହୋଇଥିଲେ । ତେବେ ନିର୍ବାଚନମଂଡଳୀଟିର ନାଁ କ'ଣ ଓ ଏହି ନିର୍ବାଚନର ଫଳାଫଳ କ'ଣ ହୋଇଥିଲା ?

(କ) ଭଦ୍ରକ - ହରେକୃଷ୍ଣ ମହତାବ ବିଜୟୀ
(ଖ) ଚୌଦ୍ୱାର - ବିଜୁ ପଟ୍ଟନାୟକ ବିଜୟୀ
(ଗ) ଭୁବନେଶ୍ୱର - ହରେକୃଷ୍ଣ ମହତାବ ବିଜୟୀ

## ରାଜନୀତି ଓ ନିର୍ବାଚନ

## ଉତ୍ତରମାଳା

୧. (ଖ) ୧୪୭ (ଅନୁସୂଚିତ ଜାତି ୨୨, ଜନଜାତି ୩୪)
୨. (ଖ) ଲୋକସଭା ୨୧, ରାଜ୍ୟସଭା ୧୦
୩. (ଖ) କୃଷ୍ଣଚଂଦ୍ର ଗଜପତି ନାରାୟଣ ଦେବ
୪. (ଗ) ଶ୍ରଦ୍ଧାକର ସୂପକାର
୫. (କ) ହରେକୃଷ୍ଣ ମହତାବ (ଅନୁଗୁଳ)
୬. (କ) ସେ ମାତ୍ର ୧୧,୦୦୦ ଭୋଟରେ ପରାଜିତ ହୋଇଥିଲେ ।
୭. (ଖ) ସୁରେଂଦ୍ର ମହାଂତି ଓ ସୁରେଂଦ୍ର ନାଥ ଦ୍ୱିବେଦୀ (କେଂନ୍ଦ୍ରାପଡ଼ା)
୮. (ଖ) ତାରା
୯. (କ) ୧୯୬୭ ହରେକୃଷ୍ଣ ମହତାବ ବିଜୟୀ
୧୦. (ଗ) ଶ୍ରୀ ହେମାନଂଦ ବିଶ୍ୱାଳ
୧୧. (ଗ) ବାଣପୁର, ପରାଜିତ
୧୨. (ଖ) ଶ୍ରୀମତୀ ଏ. ଲକ୍ଷ୍ମୀବାଈ
୧୩. (କ) ଶ୍ରୀ ମୁକୁଂଦ ପ୍ରସାଦ ଦାସ
୧୪. (ଗ) ରାଉରକେଲା
୧୫. (ଗ) ଭୁବନେଶ୍ୱର, ହରେକୃଷ୍ଣ ମହତାବ ବିଜୟୀ

# ଚଳଚ୍ଚିତ୍ର ଓ ମନୋରଂଜନ

"ଦଂଡିକେରି ମାଛ ଘର ଛାଉଅଛି
କେଉଂଟି ଭିଡ଼ଇ ବତା
ବଗ ପକ୍ଷୀ ନେଇ ଛଣ ପରଶଇ
ଗଉଡରେ, ଚିଲ ହିଁ ଧରିଛି ଛତା ।"
- ଚଇତି ଘୋଡ଼ା ଗୀତ

ଓଡ଼ିଆ ଜାତି ଆମୋଦପ୍ରିୟ । ମଇଁଷିଆଳ ଗୀତଠାରୁ ଆରଂଭ କରି ଶାସ୍ତ୍ରୀୟ ସଂଗୀତ ପର୍ଯ୍ୟଂତ, ଘୁମୁରା, ଡାଲଖାଇ ନାଚଠାରୁ ଆରଂଭ କରି ଓଡ଼ିଶୀ ନୃତ୍ୟ ପର୍ଯ୍ୟଂତ ତଥା ପାଲା, ସୁଆଂଗ, ଯାତ୍ରାଠାରୁ ଆରଂଭ କରି ଅତ୍ୟାଧୁନିକ ଚଳଚ୍ଚିତ୍ର ପର୍ଯ୍ୟଂତ ଓଡ଼ିଶାରେ ମନୋରଂଜନର ଉପାଦାନ ଭରପୂର । ଓଡ଼ିଶାର ରସଗ୍ରାହୀ ଦର୍ଶକଂକର ଆଗ୍ରହ ଓ ନିଷ୍ଠା ଆଜି ମଧ୍ୟ ରାଜ୍ୟର ଏ ସମସ୍ତ କଳାଶୈଳୀକୁ ବଂଚାଇ ରଖିଛି ।

**ପ୍ରଶ୍ନ-୧ :** ମୋହନ ସୁଂଦର ଦେବ ଗୋସ୍ୱାମୀଂକ ଦ୍ୱାରା ନିର୍ମିତ ଓଡ଼ିଶାର ପ୍ରଥମ ଚଳଚ୍ଚିତ୍ର 'ସୀତା ବିବାହ' ସଂପର୍କରେ ଊଣା ଅଧିକ ସମସ୍ତେ ଜାଣଂତି । ତେବେ ଗୋସ୍ୱାମୀ ମହାଶୟ ଯେ ନିଜେ ଏହି ଚଳଚ୍ଚିତ୍ରରେ ଅଭିନୟ କରିଥିଲେ, ଏହା ଖୁବ୍ କମ୍ ଜାଣିଥିବେ । ମୋହନ ସୁଂଦର ଦେବ ଗୋସ୍ୱାମୀ ନିଜେ ଜଣେ ଖୁବ୍ ଭଲ ଅଭିନେତା ଥିଲେ ଏବଂ ଏହି ଚଳଚ୍ଚିତ୍ରରେ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକାରେ ସେ ଅଭିନୟ କରିଛଂତି । 'ସୀତା ବିବାହ' ଚଳଚ୍ଚିତ୍ରରେ ସେ କେଉଁ ଭୂମିକାରେ ଅଭିନୟ କରିଥିଲେ ?

(କ) ବିଶ୍ୱାମିତ୍ର
(ଖ) ଜନକ
(ଗ) ଲକ୍ଷ୍ମଣ

**ପ୍ରଶ୍ନ-୨ :** ସ୍ୱନାମଧନ୍ୟ ବଂଗୀୟ ଚଳଚ୍ଚିତ୍ର ନିର୍ଦ୍ଦେଶକ ମୃଣାଳ ସେନ୍ ଗୋଟିଏ ମାତ୍ର ଓଡ଼ିଆ ଚଳଚ୍ଚିତ୍ରରେ ନିର୍ଦ୍ଦେଶନା ଦେଇଛଂତି ଏବଂ ଏହି ଚଳଚ୍ଚିତ୍ରଟି ଏହାର କଳାତ୍ମକ ବୈଶିଷ୍ଟ୍ୟ ଯୋଗୁଁ ଆଂତର୍ଜାତିକ ସ୍ତରରେ ପ୍ରଦର୍ଶିତ ହୋଇ ଓଡ଼ିଶାର ଗୌରବ ବଢ଼ାଇଛି । ଚଳଚ୍ଚିତ୍ରଟିର ନାଁ କ'ଣ ?

(କ) ଚିଲିକା ତୀରେ
(ଖ) ମାଟିର ମଣିଷ
(ଗ) ମାୟା ମିରିଗ

**ପ୍ରଶ୍ନ-୩ :** ସବୁଜ ଯୁଗର ପଂଚସଖାଂକ ମଧ୍ୟରୁ କବି ବୈକୁଂଠନାଥ ପଟ୍ଟନାୟକଂକ ନାମଟି ବେଶ୍ ପରିଚିତ । ତେବେ କବି ବୈକୁଂଠନାଥଂକ କନ୍ୟା ସଂଗୀତ କ୍ଷେତ୍ରରେ ଦେଶ ବିଦେଶରେ ଅପରିସୀମ ଖ୍ୟାତି ଅର୍ଜନ କରିଛଂତି । ସଂଗୀତ କ୍ଷେତ୍ରରେ ସ୍ୱନାମଧନ୍ୟା ଏହି ମହୀୟସୀ ମହିଳାଂକ ନାମ କ'ଣ ?

(କ) ଗୀତା ପଟ୍ଟନାୟକ
(ଖ) ଶ୍ୟାମାମଣି ପଟ୍ଟନାୟକ
(ଗ) ସୁନଂଦା ପଟ୍ଟନାୟକ

**ପ୍ରଶ୍ନ-୪ :** ନିମ୍ନରେ ବିଭିନ୍ନ କଳାତ୍ମକ କ୍ଷେତ୍ରରେ ଖ୍ୟାତି ଅର୍ଜନ କରିଥିବା କେତେଜଣ ଓଡ଼ିଆଂକର ନାମ ସହ ସେମାନେ ଯେଉଁ ସବୁ କ୍ଷେତ୍ରରେ ପାରଦର୍ଶିତା ହାସଲ କରିଛଂତି, ତାହା ସମ୍ମୁଖସ୍ଥ ସ୍ତଂଭରେ ଦିଆଯାଇଛି । ସେମାନଂକୁ ମିଳାଇନିଅ ।

| | | | |
|---|---|---|---|
| (କ) | ଶ୍ରୀହରି ନାୟକ | (୧) | ସଂଗୀତ ନିର୍ଦ୍ଦେଶନା |
| (ଖ) | ରଘୁନାଥ ପାଣିଗ୍ରାହୀ | (୨) | ଓଡ଼ିଶୀ ନୃତ୍ୟ |
| (ଗ) | କେଳୁଚରଣ ମହାପାତ୍ର | (୩) | ଚିତ୍ରକଳା |
| (ଘ) | ସାଧୁ ମେହେର | (୪) | ସଂବଲପୁରୀ ସଂଗୀତ |
| (ଙ) | ମୁରଲୀଧର ଟାଲି | (୫) | ଶାସ୍ତ୍ରୀୟ ସଂଗୀତ |
| (ଚ) | ଶାଂତନୁ ମହାପାତ୍ର | (୬) | ଚଳଚ୍ଚିତ୍ର ଅଭିନୟ ଓ ନିର୍ଦ୍ଦେଶନା |
| (ଛ) | ଫକୀର ପଟ୍ଟନାୟକ | (୭) | ଛଉ ନୃତ୍ୟ |

**ପ୍ରଶ୍ନ-୫ :** ଓଡ଼ିଆ ଚଳଚ୍ଚିତ୍ର ଜଗତର ଜଣେ ପୁରୁଖା ସଂଗୀତ ନିର୍ଦ୍ଦେଶକ ଭାବରେ ଭୁବନେଶ୍ୱର ମିଶ୍ରଂକର ନାମ ବେଶ୍ ଜଣାଶୁଣା । ତେବେ ଶ୍ରୀଯୁକ୍ତ ମିଶ୍ର ଏକ ନିର୍ଦ୍ଦିଷ୍ଟ ବାଦ୍ୟଯଂତ୍ର କ୍ଷେତ୍ରରେ ତାଂକର ପାରଦର୍ଶିତା ଲାଗି ସାରା ଦେଶରେ ଖ୍ୟାତି ଲାଭ କରିଛଂତି । ସେହି ଯଂତ୍ରଟିର ନାଁ କ'ଣ ?

(କ) ବଂଶୀ
(ଖ) ବେହେଲା
(ଗ) ସିତାର

**ପ୍ରଶ୍ନ-୬ :** ନିମ୍ନଲିଖିତ ଓଡ଼ିଆ ଚଳଚ୍ଚିତ୍ରଗୁଡ଼ିକ କେତୋଟି ଜନପ୍ରିୟ ଓଡ଼ିଆ ଉପନ୍ୟାସ ଉପରେ ଆଧାରିତ । ସେହି ମୂଳ ଉପନ୍ୟାସଗୁଡ଼ିକର ରଚୟିତାଂକର ନାମ ସୂଚାଇଦିଅ ।

(କ) ମାଟିର ମଣିଷ
(ଖ) କନକଲତା
(ଗ) କା'
(ଘ) ଅମଡ଼ାବାଟ
(ଙ) ଛ'ମାଣ ଆଠଗୁଂଠ

ପ୍ରଶ୍ନ-୭ : ନିମ୍ନରେ କେତେଗୁଡ଼ିଏ ଜନପ୍ରିୟ ଓଡ଼ିଆ ଗୀତ ସହିତ ସେଗୁଡ଼ିକର ଗାୟକ/ଗାୟିକାଙ୍କ ନାମ ସମ୍ମୁଖସ୍ଥ ସ୍ତମ୍ଭରେ ଦିଆଯାଇଛି । ସେଗୁଡ଼ିକୁ ମିଳାଇନିଅ ।

| | | | |
|---|---|---|---|
| (କ) | ନଦୀର ନାମ ଅଳସ କନ୍ୟା<br>ତାରର ନାମ ତନ୍ଦ୍ରା | (୧) | ମହମ୍ମଦ ରଫି |
| (ଖ) | ମୟୂରୀ ଗୋ ତୁମ ଆକାଶେ ମୁଁ<br>ଦିନେ ମହ୍ଲାରେ ମେଘ ସାଜିଲି | (୨) | ଅନୁରାଧା ପୌଡ଼ୱାଲ୍ |
| (ଗ) | କୋଠ ଭୋଗଖିଆ ମୋ ଚକାଆଖିଆ<br>ଉଠ ହେ ପହୁଡ଼ ଭାଙ୍ଗି | (୩) | ରଘୁନାଥ ପାଣିଗ୍ରାହୀ |
| (ଘ) | କାଳିଆ, ମୋ ଦେହେ ବୋଲିଦେ<br>ତୋ ଦେହ କଳା | (୪) | କ୍ରିଷ୍ଣା ପଟେଲ୍<br>ଓ ଜିତେନ୍ଦ୍ର ହରପାଲ୍ |
| (ଙ) | କମଳ ଦେଶ ରାଜକୁମାର ମୁଁ<br>ହାତରେ ପୁଷ୍ପ ଧନୁ | (୫) | ଅକ୍ଷୟ ମହାନ୍ତି |
| (ଚ) | ରଙ୍ଗବତୀ ରଙ୍ଗବତୀ କନକଲତା<br>ହସି ପଦେ କହ ଲୋ କଥା | (୬) | ଭିକାରୀ ଚରଣ ବଳ |
| (ଛ) | ଚମ୍ପକ ବରଣୀ ଗୋ<br>ଆଖି ଖୋଲି ବାରେ ଚାହଁ<br>ଏକାଏକା ମୋତେ ଭଲ ଲାଗେନା | (୭) | ପ୍ରଫୁଲ୍ଲ କର |

ପ୍ରଶ୍ନ-୮ : ପ୍ରଥମ ଓଡ଼ିଆ ଚଳଚ୍ଚିତ୍ର 'ସୀତା ବିବାହ'ଠାରୁ ଆରମ୍ଭ କରି ପ୍ରାୟ ୪୦ ବର୍ଷ କାଳ ବହୁ କଳାଧଳା ଚଳଚ୍ଚିତ୍ର ନିର୍ମିତ ହେବା ପରେ ଓଡ଼ିଶାର ସର୍ବପ୍ରଥମ ସଂପୂର୍ଣ ରଙ୍ଗିନ ଚଳଚ୍ଚିତ୍ର ମୁକ୍ତିଲାଭ କରିଥିଲା ୧୯୭୬ ମସିହାରେ । ଏହି ଚିତ୍ରଟିର ନାଁ କ'ଣ ?

(କ) ଶେଷ ଶ୍ରାବଣ
(ଖ) ଗପ ହେଲେ ବି ସତ
(ଗ) ଅମର ପ୍ରେମ

ପ୍ରଶ୍ନ-୯ : ପଚାଶ ଓ ଷାଠିଏ ଦଶକରେ ଓଡ଼ିଶାରେ ଯେଉଁ ସାଂସ୍କୃତିକ ନବଜାଗରଣ ସୃଷ୍ଟି ହୋଇଥିଲା, ତାର କର୍ଣ୍ଣଧାର ଥିଲେ କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ । ୧୯୬୩ ମସିହାରେ ମୁକ୍ତିଲାଭ କରିଥିବା ଏକ ଓଡ଼ିଆ ଚଳଚ୍ଚିତ୍ରରେ କବିଚନ୍ଦ୍ର କାଳୀଚରଣ ଅନେକଗୁଡ଼ିଏ ଦାୟିତ୍ୱ ନେଇଥିଲେ । ସେ ଏହି ଚଳଚ୍ଚିତ୍ରରେ ସଂଗୀତ ଦେଇଥିଲେ, କଣ୍ଠଦାନ କରିଥିଲେ; ଏପରି କି ନିଜେ ଅଭିନୟ ମଧ୍ୟ କରିଥିଲେ । ଏହି ଚଳଚ୍ଚିତ୍ରଟିର ନାଁ କ'ଣ ?

(କ) ନାରୀ
(ଖ) ସାଧନା
(ଗ) ଅମଡ଼ାବାଟ

**ପ୍ରଶ୍ନ-୧୦ :** ଜାତୀୟ ଓ ଅଂତର୍ଜାତୀୟ ସ୍ତରରେ ଆଦୃତ ଓ ପୁରସ୍କୃତ ହୋଇଥିବା ଓଡ଼ିଆ ଚଳଚ୍ଚିତ୍ରଗୁଡ଼ିକ ମଧ୍ୟରେ ୧୯୯୧ରେ ମୁକ୍ତିଲାଭ କରିଥିବା ଓଡ଼ିଆ ଚଳଚ୍ଚିତ୍ର 'ଭୁଖା'ର ସଫଳତା ଦର୍ଶକ ଓ ସମାଲୋଚକମାନଂକୁ ଅଭିଭୂତ କରିଛି । ସଂବଲପୁରୀ ଭାଷାରେ ନିର୍ମିତ ପ୍ରଥମ ଚଳଚ୍ଚିତ୍ର 'ଭୁଖା' ସ୍ପେନ୍‌ର ଗିଜନ୍ ଅଂତର୍ଜାତୀୟ ଚଳଚ୍ଚିତ୍ର ଉତ୍ସବରେ ସ୍ୱତଂତ୍ର ଜୁରି ପୁରସ୍କାର ଲାଭ କରିଛି ଓ ଫ୍ରାନ୍‌ସର ଅରିଲାକ୍ ଚଳଚ୍ଚିତ୍ର ଉତ୍ସବରେ ପ୍ରଦର୍ଶିତ ହେବାର ସୌଭାଗ୍ୟ ଲାଭ କରିଛି । ସଂବଲପୁର ଅଂଚଳର ଏକ ବାଦ୍ୟକାର ସଂପ୍ରଦାୟ 'ବଜ୍‌ନିଆ'ମାନଂକର ଜୀବନ ଓ ଜୀବିକା ଉପରେ ନିର୍ମିତ ହୋଇଥିବା ଏହି ଚଳଚ୍ଚିତ୍ରଟିର ନିର୍ଦ୍ଦେଶକଂକ ନାଁ କ'ଣ ?

(କ) ନୀରଦ ମହାପାତ୍ର
(ଖ) ସବ୍ୟସାଚୀ ମହାପାତ୍ର
(ଗ) ମନମୋହନ ମହାପାତ୍ର

**ପ୍ରଶ୍ନ-୧୧ :** ୧୯୭୬ରେ ମୁକ୍ତିଲାଭ କରିଥିବା ମୃଣାଳ ସେନଂକ ଦ୍ୱାରା ନିର୍ଦ୍ଦେଶିତ ହିଂଦୀ ଚଳଚ୍ଚିତ୍ର 'ମୃଗୟା'ର କଥାବସ୍ତୁ ଏକ ଓଡ଼ିଆ କାହାଣୀ ଉପରେ ଆଧାରିତ ଥିଲା । ଏହି ଚଳଚ୍ଚିତ୍ରଟିର ମୁଖ୍ୟ ଭୂମିକାରେ ମିଥୁନ ଚକ୍ରବର୍ତ୍ତୀ ଓ ମମତା ଶଂକର ଅଭିନୟ କରିଥିଲେ । ତେବେ ସେଇ କାହାଣୀଟିର ନାଁ କ'ଣ ଓ ତା'ର କଥାକାର ଜଣକ କିଏ ?

(କ) 'ଶିକାର' - ଭଗବତୀ ଚରଣ ପାଣିଗ୍ରାହୀ
(ଖ) 'ମାଂସର ବିଳାପ' - କାଳିଂଦୀ ଚରଣ ପାଣିଗ୍ରାହୀ
(ଗ) 'ଆରଣ୍ୟକ' - ମନୋଜ ଦାସ

**ପ୍ରଶ୍ନ-୧୨ :** 'ଡାଇମଂଡ ଭ୍ୟାଲି ପ୍ରଡକ୍‌ସନ୍‌ସ ପ୍ରାଇଭେଟ୍ ଲିମିଟେଡ୍' ତରଫରୁ ୧୯୬୪ ମସିହାରେ ଏକ ଓଡ଼ିଆ ଚଳଚ୍ଚିତ୍ର ନିର୍ମିତ ହୋଇଥିଲା । ଜ୍ଞାନପୀଠ ପୁରସ୍କାରରେ ପରେ ସମ୍ମାନିତା ହୋଇଥିବା ପ୍ରଖ୍ୟାତ ବଂଗୀୟ ଉପନ୍ୟାସ ଲେଖିକା ଆଶାପୂର୍ଣ୍ଣା ଦେବୀଂକର ଏକ କାହାଣୀକୁ ସଂବଳ କରି ନିର୍ମିତ ହୋଇଥିବା ଏହି ଚଳଚ୍ଚିତ୍ରଟିର ନାଁ କ'ଣ ?

(କ) ସାଧନା
(ଖ) ଜୀବନସାଥୀ
(ଗ) ନବଜନ୍ମ

**ପ୍ରଶ୍ନ-୧୩ :** ତାଂକର ଜନ୍ମ ୧୯୩୦ ମସିହାରେ, ବାରିପଦାରେ । ୧୯୬୦ ମସିହାରେ ସେ ପ୍ରଥମ କରି ଆକାଶବାଣୀର ଗୀତିକାର ରୂପେ ସ୍ୱୀକୃତି ପାଇଲେ । ମାତ୍ର ତାଂକଦ୍ୱାରା ଲିଖିତ ଗୀତଗୁଡ଼ିକ ଏତେ ଲୋକପ୍ରିୟ ହୋଇଥିଲା ଯେ, ସେଥି ମଧ୍ୟରୁ କେତୋଟି ଗୀତର ପ୍ରଥମ ଧାଡ଼ିଟି କହିଦେଲେ ତାହା ତାଂକୁ ଚିହ୍ନିଯିବା ପାଇଁ ଯଥେଷ୍ଟ ହେବ । ଗୀତଗୁଡ଼ିକ ହେଲା - 'ଟପ୍ ଟପ୍ ଘୋଡ଼ା ଚାଲେ...', 'ସୀମାହୀନ ଦରିଆ, ସାଥୀହୀନ ଦୁନିଆ...', 'ଯା ରେ ଭାସି ଭାସି ଯା...', 'ଏ ବନ ଝରଣା...', 'ଆହା କୁହନା, ବୁଝେନା ମୁଁ

ଏତେ ସବୁ ବାହାନା...' ଇତ୍ୟାଦି । ଏହି ଗୀତିକାରଙ୍କର ନାଁ କ'ଣ ?

(କ) ନରସିଂହ ମହାପାତ୍ର
(ଖ) ଶିବବ୍ରତ ଦାସ
(ଗ) ନାରାୟଣ ପ୍ରସାଦ ସିଂ

**ପ୍ରଶ୍ନ-୧୪ :** ନିମ୍ନରେ କେତୋଟି ପ୍ରଖ୍ୟାତ ଓଡ଼ିଆ ଚଳଚ୍ଚିତ୍ରର ନାମ ସହିତ ସମ୍ମୁଖସ୍ଥ ସ୍ତମ୍ଭରେ ସେଗୁଡ଼ିକର ନିର୍ଦ୍ଦେଶକଙ୍କର ନାମ ଦିଆଯାଇଛି । ସେ ଗୁଡ଼ିକୁ ମିଳାଇନିଅ ।

| | | | |
|---|---|---|---|
| (କ) | ମାୟାମିରିଗ | (୧) | ଅପୂର୍ବ ବୀର |
| (ଖ) | ମଲାଜହ୍ନ | (୨) | ପ୍ରଶାନ୍ତ ନନ୍ଦ |
| (ଗ) | ଲାବଣ୍ୟପ୍ରୀତି | (୩) | ନିତାଇ ପାଲିତ |
| (ଘ) | ଶେଷ ଶ୍ରାବଣ | (୪) | ସାଧୁ ମେହେର |
| (ଙ) | ଅଭିମାନ | (୫) | ନୀରଦ ମହାପାତ୍ର |

**ପ୍ରଶ୍ନ-୧୫ :** 'ରଥ କହେ ମୁଁ ଦେବତା, ପଥ କହେ ମୁଁ ଦେବତା
ରଥ ପଥ କିଛି ନାହିଁ, ସବୁ ସେ ଜଗତ ସାଇଁ ।'
ଗୀତଟି ଗାଇଛନ୍ତି ପ୍ରଖ୍ୟାତ ବଙ୍ଗୀୟ ପ୍ରଚ୍ଛଦ ଗାୟକ ଓ ସଂଗୀତ ନିର୍ଦ୍ଦେଶକ ହେମନ୍ତ କୁମାର ମୁଖାର୍ଜୀ, ଯେ କି ହେମନ୍ତ କୁମାର ନାମରେ ସାରା ଦେଶରେ ପରିଚିତ । କୌତୁହଳର ବିଷୟ ଯେ, ସେ ଏହି ଗୋଟିଏ ମାତ୍ର ଓଡ଼ିଆ ଚଳଚ୍ଚିତ୍ରରେ କଣ୍ଠଦାନ କରିଛନ୍ତି । ଚଳଚ୍ଚିତ୍ରଟିର ନାଁ କ'ଣ ?

(କ) ଶ୍ରୀ ଲୋକନାଥ
(ଖ) ମହାଲକ୍ଷ୍ମୀ ପୂଜା
(ଗ) ଶ୍ରୀ ଜଗନ୍ନାଥ

## ଚଳଚ୍ଚିତ୍ର ଓ ମନୋରଂଜନ

## ଉତ୍ତରମାଳା

୧. (କ) ବିଶ୍ୱାମିତ୍ର
୨. (ଖ) ମାଟିର ମଣିଷ
୩. (ଗ) ସୁନନ୍ଦା ପଟ୍ଟନାୟକ
୪. (କ) ଶ୍ରୀହରି ନାୟକ : ଛଉ ନୃତ୍ୟ
(ଖ) ରଘୁନାଥ ପାଣିଗ୍ରାହୀ : ଶାସ୍ତ୍ରୀୟ ସଂଗୀତ
(ଗ) କେଳୁଚରଣ ମହାପାତ୍ର : ଓଡ଼ିଶୀ ନୃତ୍ୟ

(ଘ) ସାଧୁ ମେହେର : ଚଳଚ୍ଚିତ୍ର ଅଭିନୟ ଓ ନିର୍ଦ୍ଦେଶନା
(ଙ) ମୁରଲୀଧର ଟାଲି : ଚିତ୍ରକଳା
(ଚ) ଶାଂତନୁ ମହାପାତ୍ର : ସଂଗୀତ ନିର୍ଦ୍ଦେଶନା
(ଛ) ଫକୀର ପଟ୍ଟନାୟକ : ସଂବଲପୁରୀ ସଂଗୀତ.

୫. (ଖ) ବେହେଲା

୬. (କ) କାଳିଂଦୀ ଚରଣ ପାଣିଗ୍ରାହୀ, (ଖ) ନଂଦ କିଶୋର ବଳ
(ଗ) କାହ୍ନୁଚରଣ ମହାଂତି (ଘ) ବସଂତ କୁମାରୀ ପଟ୍ଟନାୟକ
(ଙ) ଫକୀର ମୋହନ ସେନାପତି

୭. (କ) ନଦୀର ନାମ ଅଳସ କନ୍ୟା : ଅକ୍ଷୟ ମହାଂତି
(ଖ) ମୟୂରୀ ଗୋ : ମହମ୍ମଦ ରଫି (ଗ) କୋଠ ଭୋଗୀଆ : ଭିକାରୀ ବଳ
(ଘ) କାଳିଆ, ମୋ'ଦେହେ ବୋଳିଦେ ତୋ'ଦେହ କଳା : ଅନୁରାଧା ପୌଡ୍‌ୱାଲ୍
(ଙ) କମଳ ଦେଶ ରାଜକୁମାର : ପ୍ରଫୁଲ୍ଲ କର
(ଚ) ରଂଗବତୀ ରଂଗବତୀ କନକଲତା : କ୍ରିଷ୍ଣା ପଟେଲ ଓ ଜିତେଂଦ୍ର ହରପାଲ୍
(ଛ) ଚଂପକ ବରଣୀ ଗୋ : ରଘୁନାଥ ପାଣିଗ୍ରାହୀ

୮. (କ) ଗପ ହେଲେ ବି ସତ

୯. (କ) ନାରୀ

୧୦. (ଖ) ସବ୍ୟସାଚୀ ମହାପାତ୍ର

୧୧. (କ) ଶିକାର : ଭଗବତୀଚରଣ ପାଣିଗ୍ରାହୀ

୧୨. (କ) ସାଧନା

୧୩. (ଗ) ଶିବବ୍ରତ ଦାସ

୧୪. (କ) ମାୟାମିରିଗ : ନୀରଦ ମହାପାତ୍ର
(ଖ) ମଲାଜହ୍ନ : ନିତାଇ ପାଲିତ
(ଗ) ଲାବଣ୍ୟପ୍ରୀତି : ଅପୂର୍ବ ବୀର
(ଘ) ଶେଷ ଶ୍ରାବଣ : ପ୍ରଶାଂତ ନଂଦ
(ଙ) ଅଭିମାନ : ସାଧୁ ମେହେର

୧୫. (ଖ) ମହାଲକ୍ଷ୍ମୀ ପୂଜା

ଲେଖକ : ଡକ୍‌ଟର୍ ପ୍ରଫୁଲ୍ଲ କୁମାର ତ୍ରିପାଠୀ । ପ୍ରକାଶକ : 'ଆମ ଓଡ଼ିଶା' ତରଫରୁ ସୌମ୍ୟ ରଂଜନ ପଟ୍ଟନାୟକ । ଉତ୍କଳ ସଂବାଦ ପ୍ରକାଶନ ପ୍ରା. ଲି., ଏ-୬୨, ନୟାପଲ୍ଲୀ, ଭୁବନେଶ୍ୱରରେ ମୁଦ୍ରିତ । ୧୯୯୮ ।
ମୂଲ୍ୟ : ୧୦ ଟଂକା ପ୍ରଚ୍ଛଦ : ଜ୍ୟୋତି ରଂଜନ ସ୍ୱାଇଁ, ଅକ୍ଷରସଜ୍ଜା : ସଦାଶିବ ମିଶ୍ର

